# କୁନ୍ତଳା କୁମାରୀ ଗ୍ରନ୍ଥମାଳା

## ଗଦ୍ୟ ଭାଗ

ସମ୍ପାଦନା

ଡକ୍ଟର ହେମନ୍ତ କୁମାର ଦାସ

ମନୋଜ ପ୍ରକାଶନ

କଟକ

# କୁନ୍ତଳା କୁମାରୀ ଗ୍ରନ୍ଥମାଳା


- ସଂପାଦନା : ଡ. ହେମନ୍ତ କୁମାର ଦାସ
- ପ୍ରକାଶକ : ମନୋଜ ପ୍ରକାଶନ
  ମହମ୍ମଦିଆ ବଜାର
  କେମିକାଲ ଲେନ୍
  କଟକ-୭୫୩୦୦୨
- ମୋ. ନଂ. : ୯୪୩୭୩୦୭୮୬୭
- ମୁଦ୍ରଣ : ଅଭିଷେକ ଗ୍ରାଫିକ୍ସ
  କଟକ-୮
- ଅଙ୍ଗସଜ୍ଜା : ଆନନ୍ଦ
- ପ୍ରଚ୍ଛଦ : ଆନନ୍ଦ
- ମୂଲ୍ୟ : ଟ.୩୧୫/-(ବନ୍ଧାଇ)
  ଟ.୩୦୫/-(ସାଧା)
- ପ୍ରଥମ ସଂସ୍କରଣ : ୨୦୦୮


# KUNTALA KUMARI GRANTHAMALA


- Edited by Dr. Hemanta Ku. Das
- Published by : Manoj Prakasan
  Mohammadia Bazar
  Chamical Lane
  Cuttack -753002
- Mobile No 9437307867
- Printed at : Abhisek Graphics
  Cuttack-8
- DTP : Ananda
- Cover : Ananda
- Price : Rs. 315/- (Binding)
  Rs. 305/-(Paper Back)
- First Edition : 2008

# -ମୁଖବନ୍ଧ-

ମୋ ସମ୍ପାଦିତ କୁନ୍ତଳା କୁମାରୀ ଗ୍ରନ୍ଥାବଳୀର ପ୍ରଥମ ଖଣ୍ଡ (କାବ୍ୟ) ପ୍ରକାଶ ପାଇଥିଲା ୨୦୦୪ ମସିହାରେ । ଦ୍ୱିତୀୟ ଗଦ୍ୟ-ଖଣ୍ଡ ପ୍ରକାଶିତ ହେବା ପାଇଁ କିଛି ବିଳମ୍ବ ହୋଇଥିବାରୁ ମୁଁ ପ୍ରଥମେ କୁନ୍ତଳାକୁମାରୀ ଗୁଣମୁଗ୍ଧ ପାଠକ/ପାଠିକାମାନଙ୍କଠାରୁ କ୍ଷମା ମାଗି ନେଉଛି । ଓଡ଼ିଆ ଭାଷାର ଏହି କ୍ଷଣଜନ୍ମା ଏବଂ କ୍ଷୀଣଜୀବୀ କବିଙ୍କ ଜୀବନୀ ଓ ଜୀବନ ସମ୍ପର୍କରେ ପ୍ରଥମ ଖଣ୍ଡରେ ସଂକ୍ଷିପ୍ତ ଆଲୋଚନା କରିଛି । ବିଦ୍ୟୁତ୍‌ର ଚମକ ନେଇ ଆତ୍ମପ୍ରକାଶ କରି ଏବଂ ଓଡ଼ିଶାର ସମାଜ ଓ ସାହିତ୍ୟ କ୍ଷେତ୍ରକୁ ନିଜର ଅସାମାନ୍ୟ ପ୍ରଭାରେ ଆଲୋକିତ କରି ଉଲ୍‌କାର ଗତିରେ ବିଦାୟ ନେଇଯାଇଥିବା ଏହି ମହୀୟସୀ କିନ୍ତୁ ଦୁର୍ଭାଗ୍ୟ ତାଡ଼ିତା ନାରୀଙ୍କ ସମ୍ପର୍କରେ ସରଳା ଦେବୀ ଯଥାର୍ଥରେ ଲେଖିଛନ୍ତି, "ଜୀବନରେ କେବଳ ଦ୍ୱନ୍ଦ୍ୱ, ବେଦନା, ଅସହ୍ୟ ଗ୍ଲାନି ଓ ଅଶାନ୍ତି ଅସନ୍ତୋଷ ମଧ୍ୟରେ ତାଙ୍କର ଦିନଗୁଡ଼ିକ ବିତିଛି । ନିଜର ଅସହାୟ ଜୀବନର ପୁଞ୍ଜୀଭୂତ ବେଦନାର ଭାର ସେ ଭଗବାନ୍‌ଙ୍କ ଚରଣରେ ନିବେଦନ କରିଛନ୍ତି ।" ଜୀବନର ଚିତାଗ୍ନିରେ ଆଜୀବନ ତିଳତିଳ କରି ଦଗ୍ଧ ହୋଇଥିଲେ ହେଁ ଜୀବନର ଗୀତ ଗାଇବାରୁ କଦାପି ବିରତ ହୋଇ ନ ଥିବା ଏହାଙ୍କ ସମ୍ପର୍କରେ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ମତ ହେଉଛି, "ଗାଇବା ଯେପରି ପକ୍ଷୀମାନଙ୍କର ନୈସର୍ଗିକ ପ୍ରକୃତି, କବିତା ସେହିପରି କୁନ୍ତଳାଙ୍କ ପକ୍ଷରେ ପ୍ରାକୃତିକ ଥିଲା ।" ମାତ୍ର ବାର/ତେର ବର୍ଷ (୧୯୧୫-୧୯୨୮) ତାଙ୍କର ଓଡ଼ିଶାରେ ରହଣି । ଏତିକି ସମୟ ମଧ୍ୟରେ ସେ ନିଜେ ଯେଉଁପରି ମନରେ ପ୍ରାଣରେ ଓଡ଼ିଆ ହୋଇ ଏ ଦେଶ ବା ଜାତି ନିମନ୍ତେ ଯାହା କରିଛନ୍ତି ବା କରିବାକୁ ଚିନ୍ତା କରିଛନ୍ତି, ଆମୃତ୍ୟୁ ଏଠାର ଧୂଳିମାଟିର ଜୀବନ ସହିତ ଜଡ଼ିତ ରହି କେତେଜଣ ଓଡ଼ିଆ ତାହା କରିଛନ୍ତି ? ଏହି କାରଣରୁ ଆବେଗ ପ୍ରବଣ ହୃଦୟର ସମସ୍ତ ଶ୍ରଦ୍ଧା ଓ ସମ୍ମାନ ତାଙ୍କ ଚରଣରେ ଢାଳି ଦେବାକୁ ବାରମ୍ବାର ମନ ହୁଏ ।

କୁନ୍ତଳା କୁମାରୀ ସର୍ବମୋଟ ପାଞ୍ଚଟି ଉପନ୍ୟାସ ରଚନା କରିଥିଲେ ଏବଂ ଷଷ୍ଠଟି ଚିରକାଳ ପାଇଁ ଅସମାପ୍ତ ରହି ଯାଇଥିଲା । ପ୍ରକାଶିତ ଉପନ୍ୟାସଗୁଡ଼ିକ ହେଉଛି, ଭ୍ରାନ୍ତି (୧୯୨୨), ନଅତୁଣ୍ଡୀ (୧୯୨୫), ପରଶମଣି (୧୯୨୭), କାଳୀବୋହୂ (୧୯୨୭), ରଘୁ ଅରକ୍ଷିତ (୧୯୨୮) ଏବଂ ଚିତ୍ରପଟ (ଅସମ୍ପୂର୍ଣ୍ଣ) । ଏ ସବୁ ମଧ୍ୟରେ 'ରଘୁ ଅରକ୍ଷିତ' ଉପନ୍ୟାସଟି ବଡ଼

ଏବଂ ଏହା ଏକ ସତ୍ୟ ଘଟଣା ଆଧାରିତ ବୋଲି ତାଙ୍କର ଜୀବନ-ଚରିତର ଲେଖକ ଚକ୍ରଧର ମହାପାତ୍ର କହିଛନ୍ତି । ଉପନ୍ୟାସଗୁଡ଼ିକୁ ସେ ମୁଖ୍ୟତଃ ସଂସ୍କାର ତଥା ଜାତୀୟତାର ପ୍ରଚାର ନିମନ୍ତେ ବ୍ୟବହାର କରିଛନ୍ତି । ତାଙ୍କର ଗଦ୍ୟ-ସାହିତ୍ୟ ଶିଳ୍ପ-କଳାର ନିୟମରେ ଅନୁବନ୍ଧିତ ନୁହେଁ ବୋଲି ଡଃ ମାନସିଂହ ଏବଂ ଡଃ. କୁଞ୍ଜବିହାରୀ ଦାଶ ପ୍ରମୁଖ ଅନୁଯୋଗ ଜଣାଇଛନ୍ତି । ତେବେ ଡଃ ଦାଶ ଅବଶ୍ୟ ସ୍ୱୀକାର କରିଛନ୍ତି "କୁନ୍ତଳା କୁମାରୀ ବିପୁଳ ସମ୍ଭାବନାର କବି, ପ୍ରାବନ୍ଧିକ ଓ ଔପନ୍ୟାସିକ ହୋଇ ରହିଗଲେ । ଯୁଗସାହିତ୍ୟ ପରିପ୍ରେକ୍ଷୀରେ ସେ ଜଣେ ଗୌଣ କବି, ଗୌଣ ଔପନ୍ୟାସିକ, ତଥାପି ତାଙ୍କ ସାହିତ୍ୟିକ ଅବଦାନ ଓଡ଼ିଆ ସାହିତ୍ୟ ଇତିହାସରେ ଏକ ଉଜ୍ଜ୍ୱଳ ଅଧ୍ୟାୟ ହୋଇ ରହିବ ।"

ଏ ସମ୍ପର୍କରେ କେବଳ ବିନମ୍ରତାର ସହ ଏତିକି କୁହାଯାଇପାରେ ଯେ, କୁନ୍ତଳା କୁମାରୀ ସାହିତ୍ୟିକ ଯଶଃ ଖ୍ୟାତି ପ୍ରାପ୍ତି ଲାଳସାରେ ସୃଷ୍ଟି କରୁ ନ ଥିଲେ । ତାଙ୍କର ଲକ୍ଷ୍ୟଥିଲା ଦୁଇଟି । ପ୍ରଥମତଃ, ଓଡ଼ିଆ ଭାଷାର ଦାରିଦ୍ର୍ୟ ଦୂର କରି ତାକୁ ବିଶ୍ୱ ସମକ୍ଷରେ ନ ହେଲେ ମଧ୍ୟ ଅନ୍ତତଃ ସର୍ବ ଭାରତୀୟ ଦରବାରରେ ନିଜ ପରିଚୟରେ ପ୍ରତିଷ୍ଠା ଦିଆଇବା ଏବଂ ଦ୍ୱିତୀୟତଃ, କୁସଂସ୍କାର, ଦାରିଦ୍ର୍ୟ, ଅଶିକ୍ଷାଜନିତ ଅଜ୍ଞାନ ଅନ୍ଧକାର ଗର୍ଭରୁ ଓଡ଼ିଆମାନଙ୍କୁ ଉଦ୍ଧାର କରିବା ନିମନ୍ତେ ମାର୍ଗ ଦର୍ଶାଇବା । ତାଙ୍କ କୃତିଗୁଡ଼ିକୁ ଅନ୍ତତଃ ଏହି ଦୃଷ୍ଟିରୁ ବିଚାର କରାଯିବା ନିତାନ୍ତ ଆବଶ୍ୟକ । ଜଣେ ସିଦ୍ଧକାମ ସାହିତ୍ୟିକ ହେବାର ସମସ୍ତ ଶକ୍ତି ଯେ, ତାଙ୍କଠାରେ ବିଦ୍ୟମାନ ଥିଲା, ଏହା ଅନ୍ତତଃ ତାଙ୍କର ସବୁଠାରୁ ବଡ଼ ଶତ୍ରୁ ମଧ ସ୍ୱୀକାର କରିବ । ଜୀବନର ସମସ୍ତ ପ୍ରତିକୂଳତା ସହିତ ସଂଗ୍ରାମ ଚଳାଇ ସେ ଯେତିକି କରି ପାରିଛନ୍ତି, ସେଥିଲାଗି ତାଙ୍କୁ ଧନ୍ୟବାଦ ଦେବା କଥା । ତେଣୁ ଏହି ଚିର ବିଦ୍ରୋହିଣୀ କବିଟି ପ୍ରତି ଜାତୀୟ ଜୀବନରେ ଏ ଆବେଗପୂର୍ଣ୍ଣ ସ୍ଥାନ ଚିରକାଳ ରହିବା ଉଚିତ । ବର୍ତ୍ତମାନ ତାଙ୍କ ଉପନ୍ୟାସ ସମ୍ପର୍କରେ ସଂକ୍ଷେପରେ ଆଲୋଚନା କରିବା ପୂର୍ବରୁ ସୂଚନା ଦିଆଯାଇପାରେ ଯେ ସମାଜ ସଂସ୍କାରର ତୀବ୍ର କାମନା ମଧରୁ ହିଁ ତାଙ୍କର କଥା-ସାହିତ୍ୟର ସୃଷ୍ଟି । ସମ୍ଭବତଃ, କାବ୍ୟ କବିତା ଅପେକ୍ଷା କାହାଣୀ ଧର୍ମୀ ଗଦ୍ୟ ଯେ ଏ ଦିଗରେ ସମଧିକ ପ୍ରଭାବଶାଳୀ ହୋଇପାରିବ, ଏ ବିଶ୍ୱାସ ତାଙ୍କର ହୋଇଥିଲା । ତେଣୁ ସେ ସେଇ ଲକ୍ଷ୍ୟରେ ଏଗୁଡ଼ିକ ସୃଷ୍ଟି କରିଥିଲେ । 'ଗାନ୍ଧିଜୀ'ଙ୍କ ଆଦର୍ଶର ପରିପ୍ରଚାର ନିମନ୍ତେ ଏସବୁର ପରିକଳ୍ପନା ବୋଲି କୁହାଯାଉଛି । ମାତ୍ର ସେ ଉପନ୍ୟାସ ରଚନା ଆରମ୍ଭ କଲାବେଳକୁ ଗାନ୍ଧିବାଦର ଆଦର୍ଶ ଏ ଦେଶରେ କେତେଦୂର ପ୍ରସାରିତ ତଥା ପ୍ରତିଷ୍ଠିତ ହୋଇଥିଲା, ତାହା ବିଚାର କରିବାକୁ ହେବ । ମନେ ରଖିବାକୁ ହେବ ଯେ, ଗାନ୍ଧୀ ଭାରତ ଆସନ୍ତି ୧୯୧୫ରେ । ତା'ପରେ ବର୍ଷାଧିକ କାଳ ଭାରତବର୍ଷର ବିଭିନ୍ନ ପ୍ରାନ୍ତରେ ଘୂରିବୁଲି ଏ ଦେଶର ଆତ୍ମାକୁ ଚିହ୍ନିବା ପାଇଁ ଚେଷ୍ଟା କରନ୍ତି । ଜନତାର ସମସ୍ୟା ସହିତ ପରିଚିତ ହେବା ପରେ ତାଙ୍କର ପ୍ରକୃତ ସାଧାରଣ ଜୀବନ ଆରମ୍ଭ ହୁଏ । ମାତ୍ର ୪/୫ ବର୍ଷ ମଧରେ ଗାନ୍ଧୀବାଦର ଆଦର୍ଶ ଯେ, ଏ ଦେଶର ଚିନ୍ତା ଜଗଦ୍‌ରେ ଦାନା ବାନ୍ଧି ଯାଇଥିବ, ଏହା ସର୍ବାଂଶରେ ସତ୍ୟ ହୋଇ ନ ପାରେ । ଏହିଭଳି ସ୍ଥିତିରେ କୁନ୍ତଳା କୁମାରୀ ନିଜସ୍ୱ ଚିନ୍ତାଦ୍ୱାରା ପ୍ରେରିତ ହୋଇ ନିଜର ସାହିତ୍ୟିକ ଆଦର୍ଶ ସ୍ଥିର କରିଛନ୍ତି ବୋଲି ଯଦି କୁହାଯାଏ, ତେବେ ତାହା ସତ୍ୟଠାରୁ ଖୁବ୍ ଦୂରବର୍ତ୍ତୀ ହେବ ନାହିଁ ନିଶ୍ଚୟ । ପୁଣି

ସେ ଯାହା କହୁଥିଲେ, ଏ ଦେଶର ଶାଶ୍ୱତ ଆଧ୍ୟାତ୍ମିକ ଦର୍ଶନଠାରୁ ତାହା ଭିନ୍ନ ମଧ୍ୟ ନ ଥିଲା । ଶ୍ରମ ଶକ୍ତିର ଗୁରୁତ୍ୱ, ଆତ୍ମନିର୍ଭରଶୀଳତା, ମାନବବାଦିତା ଏବଂ ନିଷ୍କାମ-କର୍ମ- ଏ ସବୁ ଭିତରେ ରହିଛି ଭାରତୀୟ ଦୃଷ୍ଟି ଓ ଦର୍ଶନର ଚିରନ୍ତନ ସୁଗନ୍ଧ । ନିଜର ସ୍ୱଳ୍ପ ଜୀବନ କାଳ ମଧ୍ୟରେ କୁନ୍ତଳା କୁମାରୀ କେବଳ ଏହାକୁ ଚିହ୍ନି ନ ଥିଲେ, ତା' ସହିତ ଓତଃପ୍ରୋତ ଭାବରେ ମିଶି ମଧ୍ୟ ଯାଇଥିଲେ । ତାଙ୍କର ସୃଷ୍ଟିରୁ ଏହାର ଭୁରି ଭୁରି ଦୃଷ୍ଟାନ୍ତ ଦିଆଯାଇପାରିବ । ଅବଶ୍ୟ ଗାନ୍ଧି-ଦର୍ଶନ ସହିତ ତାଙ୍କର କୌଣସି ବିରୋଧ ନ ଥିଲା । ଏହାକୁ ସେ ଗ୍ରହଣ କରି ନେଇଥିଲେ ମଧ୍ୟ । 'ଆହ୍ୱାନ' (୧୯୩୦) ଗାନ୍ଧିବାଦର ସମର୍ଥନରେ ରଚିତ ହୋଇ ସେ କାଳରେ ଇଂରେଜ ସରକାରଙ୍କ ଦ୍ୱାରା ବାଜ୍ୟାପ୍ତ ହୋଇଥିବାରୁ ଏହା ପ୍ରମାଣିତ ହୁଏ ।

କ୍ଷୁଦ୍ର ଉପନ୍ୟାସ 'ଭ୍ରାନ୍ତି' (୧୯୨୨) ହେଉଛି ଉପନ୍ୟାସ ରଚନା କ୍ଷେତ୍ରରେ ତାଙ୍କର ପ୍ରଥମ ଉଦ୍ୟମ । ସାମାନ୍ୟ ଭୁଲ୍ ବୁଝାମଣାରୁ ମଣିଷ ଜୀବନରେ କି ଭଳି ବିପର୍ଯ୍ୟୟ ସୃଷ୍ଟି ହୁଏ, ଔପନ୍ୟାସିକା ଏଥିରେ ଦୁଇ ବାଲ୍ୟ ପ୍ରଣୟୀ ଅନଙ୍ଗମୋହନ ଓ ଶେଫାଳି ମାଧ୍ୟମରେ ଦେଖାଇଛନ୍ତି । ପିତୃମାତୃହୀନ ଅନଙ୍ଗ ଧନାଢ଼୍ୟ ଜମିଦାର ହରିହରଙ୍କ ଗୃହରେ ଆବାଲ୍ୟରୁ ପୁତ୍ର ସ୍ନେହରେ ପାଳିତ । ନିଜର ଏକମାତ୍ର କନ୍ୟା ଶେଫାଳି ସହିତ ତାହାର ବିବାହ ଦେଇ ତାକୁ ଜାମାତା ପଦରେ ବରଣ କରି ନେବାର ଏକ କାମନା ହରିହରଙ୍କର ଥାଏ ଏବଂ ତାହା କ୍ରମେ ବାହାରେ ପ୍ରଚାରିତ ମଧ୍ୟ ହୋଇଯାଏ । ତେବେ ହରିହରଙ୍କ କର୍ମଚାରୀ 'ସାନନ୍ଦ ଦାସ' ନିଜର ରୁଗ୍ଣା ଏବଂ କୁରୂପା କନ୍ୟା ମାଳତୀ ସହିତ ଅନଙ୍ଗର ବିବାହ ଦେବାର ଏକ ଯୋଜନା କରି ନିଜର ପରିବାରକୁ ଏହାର ପରିପୂର୍ତ୍ତି ନିମନ୍ତେ ଲଗାଇ ଦିଅନ୍ତି । ଏହାପରେ ଆରମ୍ଭ ହୁଏ ଭୁଲ୍‌ବୁଝାମଣା ଏବଂ ପାତ୍ର ତଥା ପାତ୍ରୀ ପକ୍ଷ ମଧ୍ୟରେ ଦୂରତ୍ୱ ବଢ଼ିଚାଲେ । ଅନଙ୍ଗ ଗୃହତ୍ୟାଗ କରି ପଳାଇଯାଏ ଏବଂ ଶେଷରେବହୁ ଘଟଣା ପରେ ଦୁଇ ପ୍ରଣୟୀଙ୍କର ମିଳନରେ ଉପନ୍ୟାସ ଶେଷ ହୁଏ । ଔପନ୍ୟାସିକା ଏଥିରେ ଦୁଇଟି କଥା ଉପରେ ଗୁରୁତ୍ୱ ଦେଇଛନ୍ତି । ପ୍ରଥମଟି ହେଉଛି ଜୀବନ ପାଇଁ ମାନବିକତା ଏବଂ ମାନବବାଦିତାର ଅପରିହାର୍ଯ୍ୟତା ତଥା ଦ୍ୱିତୀୟରେ ସମ୍ପର୍କଗତ ଜଟିଳତା ସୃଷ୍ଟିରେ ଅନ୍ତର୍ମୁଖୀନତାର ଭୂମିକା । କହିବା ବାହୁଲ୍ୟ ଯେ, ଶୈଳ୍ପିକ ଦୃଷ୍ଟିରୁ ଏଥିରେ ବହୁ ଦୁର୍ବଳତା ରହିଛି । ତେବେ ସେ ଯୁଗର ସାମାଜିକ ସ୍ଥିତିର ବିଶ୍ଳେଷଣ ନିମନ୍ତେ ଏହାର ଐତିହାସିକ ଗୁରୁତ୍ୱକୁ ସ୍ୱୀକାର କରିବାକୁ ହେବ ।

ନଅତୁଣ୍ଡୀ (୧୯୨୫) ଓଡ଼ିଆ ନିମ୍ନ ମଧ୍ୟବିତ୍ତ ପରିବାରର ଏକ ନାରୀ କୈନ୍ଦ୍ରିକ ଚିତ୍ର । ଏହାର ମୁଖ୍ୟ ଚରିତ୍ର ହେଉଛନ୍ତି ମାତାପୁତ୍ରୀ ଦୁଇଜଣ, ଯେଉଁମାନଙ୍କର ଖାରଜିହ୍ୱାର ଉତାପ ସମଗ୍ର ବିଶ୍ୱସଂସାରକୁ ଜାଳିପୋଡ଼ି ପାଉଁଶ କରି ଦେଇପାରେ । ତେବେ ଏମାନଙ୍କ ଅନ୍ତରରେ ଥାଏ ଅସହାୟ ଏବଂ ଦୁର୍ବଳଗୋଷ୍ଠୀ ନିମନ୍ତେ ପ୍ରଚଣ୍ଡ ମମତା । ଏ ଦୁଇ ଧୁରନ୍ଧର ନାରୀଙ୍କର ଜୀବନ ସଂଗ୍ରାମର କରୁଣ ମଧୁର ଚିତ୍ର ଲେଖିକା ଏଥିରେ ଆଙ୍କିଛନ୍ତି । ବ୍ୟକ୍ତିତ୍ୱର ପ୍ରଖର ଦୀପ୍ତିରେ ଜମିଦାର ତନୟ କୃଷ୍ଣଚରଣଙ୍କୁ ମୁଗ୍ଧ କରି ତାଙ୍କର ଅନ୍ତଃପୁରରେ ସ୍ଥାନ କରି ନେଉଛି ନଅତୁଣ୍ଡୀ କନ୍ୟା ରତନୀ । ଏଥି ସହିତ ଯୁକ୍ତ ହୋଇଛି ଜମିଦାର ପରିବାରର ଦେଶ ସେବା, ମାନବପ୍ରୀତି, ଶ୍ରମର ମହତ୍ତ୍ୱ, ସ୍ୱଦେଶୀ ଚିନ୍ତାର ଗୁରୁତ୍ୱ, ଅସ୍ପୃଶ୍ୟତା ଦୂରୀକରଣ ନିମନ୍ତେ ଉଦ୍ୟମ, ସାମ୍ପ୍ରଦାୟିକ

ସଦ୍‌ଭାବ ପ୍ରତିଷ୍ଠା ନିମନ୍ତେ ପ୍ରଚେଷ୍ଟା ପ୍ରଭୃତି ନାନା କଥା । ମାନବିକତାର ଅଧୋପତନ, ଓଡ଼ିଆମାନଙ୍କର ଦୁଃଖଦୁର୍ଦ୍ଦଶା ଏବଂ ଶ୍ରମ ବିମୁଖତା ଦର୍ଶନରେ ଲେଖିକାଙ୍କ ମନରେ ଯେଉଁ ଆଲୋଡ଼ନ ସୃଷ୍ଟି ହୋଇଥିଲା, ତାହାରି ପରିପ୍ରକାଶ ଘଟିଛି ଏଥିରେ । ଗ୍ରାମ-ଉତ୍କଳରେ ରତନୀ ଭଳି ମୁଖର ଚରିତ୍ର ଏବେ ମଧ ବିରଳ ହୋଇଯାଇ ନାହାନ୍ତି । ଏହାକୁ ତେଣୁ ସେ କାଳର ଉତ୍କଳୀୟ ଗ୍ରାମାଞ୍ଚଳର ଏକ ବାସ୍ତବବାଦୀ ଚିତ୍ର ବୋଲି ମଧ କୁହାଯାଇପାରିବ । ଓଡ଼ିଆଣୀ ଏବଂ ମଫସଲିଆଣୀ ରତନୀଠାରେ ଲେଖିକା ବହୁ ସଦ୍‌ଗୁଣର ସନ୍ଧାନ କରି ଏହାକୁ ଅମର କରି ଦେଇଛନ୍ତି ବୋଲି କୁହାଯାଇପାରେ । ଉପନ୍ୟାସ କଳା ଦୃଷ୍ଟିରୁ ଏହାର ଦୋଷତ୍ରୁଟି ସମ୍ପର୍କରେ ଆଲୋଚନା ନ କରିବା ଭଲ । 'ଭୂମିକା'ରେ ଲେଖିକା ସ୍ପଷ୍ଟ କରିଛନ୍ତି, 'ହସ, ଅପାଠୁଆ ହସ ! ପାଠୁଆ । ଦୋଷ ଖୋଜି ବୁଲି ବସ' ଦୋଷ ଦର୍ଶାଇ ପାଠୁଆ ତାଲିକାରେ ନାମ ଲେଖାଇବା ପାଇଁ ଆମର ତିଳେ ମାତ୍ର ଇଚ୍ଛା ନାହିଁ ।

କାଳୀବୋହୂ (୧୯୨୭) ତାଙ୍କର ତୃତୀୟ ଉପନ୍ୟାସ । ବହୁଘଟଣା ଏବଂ ଚରିତ୍ର ସମନ୍ୱିତ ଏହି ଉପନ୍ୟାସ ଲେଖିକାଙ୍କର ସଂସ୍କାର ମନୋଭାବର ଏକ ଚମତ୍କାର ଦୃଷ୍ଟାନ୍ତ । ଏଥିରେ ବାଲ୍ୟ ବିବାହର କୁପରିଣାମ, ଜାତୀୟତାର ତୀବ୍ର ଝଲକ, ମାତୃଭୂମି ଓ ମାତୃଭାଷା ପ୍ରତି ମମତା ଇତ୍ୟାଦି ବର୍ଣ୍ଣନା ସହିତ ବହୁ ବିଚିତ୍ର ଚରିତ୍ରର ସମାବେଶ ଘଟିଛି । ଏଥିରେ ଅଛନ୍ତି ଚରିତ୍ରହୀନ ଲମ୍ପଟ, ଧନଲୋଲୁପ ଅଚ୍ୟୁତ ମିଶ୍ର, ତାଙ୍କର ଏକମାତ୍ର ବାଳବିଧବା ତରୁଣୀ କନ୍ୟା ଲକ୍ଷ୍ମୀ, ଅଧ୍ୟାତ୍ମମନୋଭାବସମ୍ପନ୍ନ ଏବଂ ସେବାଧର୍ମ ପରାୟଣ ଗୁରୁ ସଦାନନ୍ଦ, ତାଙ୍କର ମାନବବାଦୀ ଦୁଇଶିଷ୍ୟ ବୃଦ୍ଧ ବିପିନଚନ୍ଦ୍ର ଏବଂ ଯୁବକ ଚନ୍ଦ୍ରୋଦୟ, ଦେଶସେବା ବ୍ରତୀ ଯୁବକ କୃଷ୍ଣଚନ୍ଦ୍ର ପ୍ରଭୃତି । ବସ୍ତୁତଃ ଉପନ୍ୟାସଟିକୁ ବହୁ ଚରିତ୍ରର ଏକ ବିଚିତ୍ର ଚିତ୍ରଶାଳା ବୋଲି କୁହାଯାଇପାରେ, ଯେଉଁଠି ଲେଖିକା ମାନବ ଚରିତ୍ରର ବିଶ୍ଳେଷଣ ନିମନ୍ତେ ପର୍ଯ୍ୟାପ୍ତ ସୁଯୋଗ ପାଇଛନ୍ତି । ଉପନ୍ୟାସରେ ଏକ ସ୍ୱେଚ୍ଛାସେବୀ ସଂଘ ଗଠନର ପରିକଳ୍ପନା ରହିଛି, ଯେଉଁଥିରୁ ଏହି ଉପନ୍ୟାସ ରଚନାର ପୃଷ୍ଠଭୂମି ସମ୍ପର୍କରେ ସ୍ପଷ୍ଟ ସୂଚନା ମିଳେ । ଏହାର ଲକ୍ଷ୍ୟ ସମ୍ପର୍କରେ କୁହାଯାଇଛି – (କ) ଦେଶ ଜନନୀର ସେବା ନିମନ୍ତେ ସ୍ୱେଚ୍ଛାରେ ଅଗ୍ରସର ହେଉଥିବା ଯୁବକମାନଙ୍କୁ ପୃଷ୍ଠପୋଷକତା ଯୋଗାଇ ଦେଇ ସମଗ୍ର ଦେଶରେ ଏଥି ନିମନ୍ତେ ଏକ ଅନୁକୂଳ ବାତାବରଣ ସୃଷ୍ଟି କରିବା (ଖ) ଓଡ଼ିଶାର ଶିଳ୍ପ ବାଣିଜ୍ୟ ସାହିତ୍ୟର ଉନ୍ନତି ଓ ନିଖିଳ ଉତ୍କଳର ଏକୀକରଣ ନିମନ୍ତେ ଶପଥ ଗ୍ରହଣ (ଗ) ସମାଜ ସଂସ୍କାର ଜାତିଭେଦ ଦୂରୀକରଣ, ମାନବ ମାନବ ମଧରେ ପ୍ରୀତି ସଂସ୍ଥାପନ ଏବଂ ନାରୀଜାତିର ଉନ୍ନତି ନିମନ୍ତେ କାୟମନୋବାକ୍ୟରେ ଉଦ୍ୟମ କରିବା (ଘ) ଚାରିତ୍ରିକ ଶୁଦ୍ଧତା ବଜାୟ ରଖି ନିଶାନିବାରଣ ନିମନ୍ତେ ଐକ୍ୟବଦ୍ଧ ହୋଇ କାର୍ଯ୍ୟ କରିବା ପ୍ରଭୃତି । ଉପନ୍ୟାସ ମାଧମରେ ଲେଖିକା ଏହି ସବୁ ବିଷୟ ଉପରେ ଆଲୋକପାତ କରିଛନ୍ତି । ବିଂଶ ଶତକର ଆଦ୍ୟ ପାଦରେ କେବଳ ଜାତିର ଗୌରବ ମଧୁସୂଦନଙ୍କୁ ଛାଡ଼ି ଦେଲେ, ଅନ୍ୟ କେହି ଏ ବିଷୟରେ ସଚେତନ ନ ଥିଲାବେଳେ, ଓଡ଼ିଶାରେ ବାର ତେର ବର୍ଷ କଟାଇଥିବା ଜଣେ ତରୁଣୀ ଏଭଳି ପବିତ୍ର ଦୀକ୍ଷା କାହାଠାରୁ ଗ୍ରହଣ କଲେ, ତାହା ପାଠକର ଚିତ୍ତରେ ବିସ୍ମୟ ଉଦ୍ରେକ କରେ । ଉତ୍କଳର ସେହି ଦୁର୍ଭାଗ୍ୟପୂର୍ଣ୍ଣ ଅନ୍ଧକାର ଯୁଗରେ ବାସ କରି ଔପନ୍ୟାସିକ ସମଗ୍ର ରାଜ୍ୟକୁ ଶିଳ୍ପ

ବାଣିଜ୍ୟରେ ସମୃଦ୍ଧ କରିବାର ସ୍ୱପ୍ନ ଦେଖିଛନ୍ତି । କାହିଁ ସାବୁନ କାରଖାନା (ଏହି ବସ୍ତୁଟି ତତ୍କାଳୀନ ସାମାଜିକ ଜୀବନରେ କେତେଦୂର ପ୍ରବେଶ କରିଥିଲା, ତାହା ଚିନ୍ତା କରିବାକୁ ହେବ), କେଉଁଠି କାଗଜକଳ, କାହିଁ ଲୁଗାକଳ, କେଉଁଠି ଦିଆସିଲି କାରଖାନା, ମଧୁବାବୁଙ୍କ ଟାନେରୀ ଯୋତା, ମୟୂରଭଞ୍ଜର ହାତୀଦାନ୍ତର କାର୍ଯ୍ୟ, କଟକର ସୁନାରୂପା ଗହଣା, ବାମଣ୍ଡାର ଏଣ୍ଡି ଟସର, ଲୌହ ଶିଳ୍ପ, ଚିନିଶିଳ୍ପ ପ୍ରତିଷ୍ଠା ନିମନ୍ତେ ଉଦ୍‌ଯୋଗ– ଭିତରେ ଏକ ତରୁଣ ପ୍ରାଣର ଆବେଗୋଚ୍ଛଳ ସ୍ୱପ୍ନ କିଭଳି ରୂପାୟିତ ହୋଇଛି, ତାହା ଏହି ଉପନ୍ୟାସରୁ ଲକ୍ଷ୍ୟ କରାଯାଇପାରିବ । ସବୁଠାରୁ ଆଶ୍ଚର୍ଯ୍ୟର କଥା ସେତିକିବେଳେ କୁନ୍ତଳା କୁମାରୀ ଭୁବନେଶ୍ୱରରେ କୃଷି ବିଦ୍ୟାଳୟ ସ୍ଥାପନର ସ୍ୱପ୍ନ ଦେଖିଛନ୍ତି ଯାହା ସାକାର ହୋଇଛି ଏହାର ପ୍ରାୟ ଚାଳିଶ ବର୍ଷ ପରେ ଗତ ଶତକର ଷଷ୍ଠ ଦଶକରେ । ସଦାନନ୍ଦ, ଚନ୍ଦ୍ରୋଦୟ ଏବଂ ବିପିନଚନ୍ଦ୍ରଙ୍କ ସହିତ ଯୋଗ ଦେଇଛନ୍ତି ଏ ଦେଶର ଜଣେ ଧନାଢ଼୍ୟ ବ୍ୟବସାୟୀ ଦ୍ୱାରିକା ନାଥ । ଶେଷରେ ନାନା ଘାଟର ପାଣି ପିଇ ଗୃହତ୍ୟାଗିନୀ ଲକ୍ଷ୍ମୀ ମଧ ଏମାନଙ୍କ ସହିତ ଯୋଗ ଦେଉଛି । ଏହିଠାରେ ଆଶ୍ରମର ପବିତ୍ର ପରିବେଶରେ ତରୁଣୀ ବିଧବା ଲକ୍ଷ୍ମୀ ସହିତ ସର୍ବତ୍ୟାଗୀ ଯୁବକ ଚନ୍ଦ୍ରୋଦୟଙ୍କର ସାକ୍ଷାତ୍ ହେଉଛି ଏବଂ ପ୍ରଥମ ଦର୍ଶନରୁ ହିଁ ଉଭୟେ ପରସ୍ପର ପ୍ରତି ଆକୃଷ୍ଟ ହୋଇ ପଡୁଛନ୍ତି । ବହୁ ବାଧା ଏବଂ ପ୍ରତିବନ୍ଧକ ଅତିକ୍ରମ କରି ସଦାନନ୍ଦ ଶେଷରେ କୃଷ୍ଣକଳି ଲକ୍ଷ୍ମୀ ସହିତ ଚନ୍ଦ୍ରୋଦୟର ପରିଣୟ ସଂଘଟନ କରାଇଛନ୍ତି । ଦ୍ୱାରିକାନାଥଙ୍କ ପତ୍ନୀ ଇନ୍ଦିରାଙ୍କ ନିର୍ଦ୍ଦେଶରେ 'କାଳୀ ବୋହୂ ଲକ୍ଷ୍ମୀ' ଏବଂ 'ଓଡ଼ିଶାର ଅନ୍ଧାର ଆକାଶରେ ନବ ଚନ୍ଦ୍ରୋଦୟ' ଜାତିଭେଦ କୁସଂସ୍କାର, ନାରୀ ନିର୍ଯ୍ୟାତନା ଇତ୍ୟାଦି ଦୂର କରିବା ନିମନ୍ତେ ଶପଥ ଗ୍ରହଣ କରୁଛନ୍ତି । ମୋଟା ମୋଟି ଭାବରେ ଏହା ହିଁ ହେଉଛି ଉପନ୍ୟାସର କଥାଭାଗ । ଉପନ୍ୟାସଟି କୁନ୍ତଳା କୁମାରୀଙ୍କ ସ୍ୱପ୍ନ ବିଳାସର ଏକ ସମୁଜ୍ଜ୍ୱଳ ଦୃଷ୍ଟାନ୍ତ ।

ଚତୁର୍ଥ ଉପନ୍ୟାସ 'ପରଶମଣି' (୧୯୨୭) ପ୍ରକାଶ ପାଇଛି ସେଇ ବର୍ଷ। । ଏଥିରେ ମଧ ଏକ ନିମ୍ନ ମଧ୍ୟବିତ୍ତ ପରିବାରର ବଧୂ ଲଳିତା ଜୀବନର କାରୁଣ୍ୟ ମର୍ମରିତ ଜୀବନ ଗାଥାର ବିଶ୍ଳେଷଣ କରାଯାଇଛି । ସ୍ୱାମୀ ବିମ୍ବାଧର କର୍ମ ଉପଲକ୍ଷେ ସହରରେ । ବଧୂ ଲଳିତା ପଲ୍ଲୀଗୃହରେ ବନ୍ଦିନୀ ଜଟିଳା କୁଟିଳାଙ୍କର କଡ଼ା ତତ୍ତ୍ୱା ବଧାନରେ । ଗ୍ରାମର ପରିବାରଟି ବେଶ୍ ବଡ଼ । ବିଧବା ମାତା, ବିଧବା ଭଗିନୀ, ଭ୍ରାତୃଜାୟା ଓ ତାଙ୍କର ପାଞ୍ଚଟି ନାବାଳକ ସନ୍ତାନ ଆଉ ପୁଣି ଦ୍ୱାଦଶ ବର୍ଷ ବୟସ୍କ ଭ୍ରାତା ବୃନ୍ଦାବନ ନର୍ମାଲ ସ୍କୁଲ୍‌ର ଛାତ୍ର । ଏତେଗୁଡ଼ିଏ ପ୍ରାଣୀଙ୍କର ଗ୍ରାସାଚ୍ଛାଦନର ଭାର ବିମ୍ବାଧରଙ୍କ କାନ୍ଧରେ । ସମ୍ବଳ ମାତ୍ର କିରାଣୀ ଚାକିରୀ ଖଣ୍ଡିକ । ତଥାପି ସେ ଦୁଇ ଦୁଇଥର କିଶୋରୀ ବଧୂକୁ ନିଜ ପାଖକୁ ନେବାକୁ ସ୍ଥିର କରି ବସା ଠିକଣା କରନ୍ତି । ମାତ୍ର ପ୍ରତ୍ୟେକ ଥର ତାଙ୍କର ଏହି ଉଦ୍ୟମକୁ ବ୍ୟର୍ଥ କରି ଦିଅନ୍ତି ଜନନୀ ସ୍ୱୟଂ –ଜାତିକୁଳମାନ ତଥା ସଂସ୍କାରର ଦୁହାଇ ଦେଇ । ପୁଣି ଶାଶୁଙ୍କ ପଛରେ ଥାଏ ବଡ଼ ଜାଆ ରମାଙ୍କର ଈର୍ଷାତୁର ଦୃଷ୍ଟି, ଆଉ ବିଧବା ନଣନ୍ଦ ତମାଳିନୀଙ୍କର ପରହିଂସ୍ରକ ସ୍ୱଭାବ । ସମସ୍ତଙ୍କ ତୁଣ୍ଡରେ ଗୋଟିଏ କଥା– ତୁଆ ଭୁଆସୁଣୀ ତେର ବର୍ଷର ପିଲାଟା, ପୁଣି କଟକ ସହର ବୋଲି କଥା, ପାନରୁ ଚୂନ ଖସିଲେ ଜାତି କୁଳକୁ ନିନ୍ଦା । ପ୍ରକୃତ କଥା ହେଉଛି, ନିଜର ଅସପତ୍ନ ସାମ୍ରାଜ୍ୟର ଏହି ଚିରଅନୁଗତ ଓ ସଦା ଆଜ୍ଞା ବହ ପ୍ରଜାଟିକୁ ଛାଡ଼ି ଦେବାକୁ କେହି ପ୍ରସ୍ତୁତ ନୁହେଁ ।

ରୋଗ ଆଉ ଶୋକ ଏବଂ ମାଡ଼ ଆଉ ଗାଳିକୁ ସମ୍ବଳ କରି ଲଳିତ ତେଣୁ ଗାଁରେ ରହିଯାଏ ଆଉ ଦିନ ଗଣେ- କେବେ ଶେଷ ହେବ ପାଷାଣୀ ଅହଲ୍ୟାର ଅନନ୍ତ ପ୍ରତୀକ୍ଷା ! କନ୍ୟାର ଦୁର୍ଦ୍ଦଶା ଶୁଣି ଜନ୍ମଦାତା ଶଙ୍କୁଳି ଆସିଥିଲେ ଯେ ତାଙ୍କୁ ମଧ ନିରାଶ ହୋଇ ଏକାକୀ ଫେରିଯିବାକୁ ପଡ଼େ । ଅସହ୍ୟ ଯନ୍ତ୍ରଣାରେ ଲଳିତା ବାପ ଘରକୁ ପଳାଇ ଯାଇ ସେଠାରେ ମଧ ଶାନ୍ତି ପାଇପାରେ ନାହିଁ । ଶେଷରେ ପିତାଙ୍କର ଉଦ୍‌ଯୋଗରେ ସ୍ୱାମୀ ସହିତ ତାହାର ମିଳନ ହୁଏ । ତେବେ ସେତେବେଳକୁ ପାରିବାରିକ ଚାପ, କର୍ମସ୍ଥଳର ଅଶାନ୍ତିରେ ଅଣ ନିଃଶ୍ୱାସୀ ହୋଇ ବିଦ୍ୟାଧର ଅବାଟରେ ପାଦ ଦେଇ ସାରିଥାଏ । ସୁରା ଆଉ ସାଖୀ ଯେଉଁ ଜୀବନର ନିତ୍ୟ ସମ୍ବଳ ସେଠାରେ ଆଉ ପାରିବାରିକ ସୁଖର ଗୁରୁତ୍ୱ କେତେ ? ପୁଅଟିଏ ହୁଏ ଯେ, ସେ ପୁଣି ଅକାଳରେ ବାହୁଡ଼ିଯାଏ । ବିଦ୍ୟାଧରର ବାହାରର ଆକର୍ଷଣ ବଢ଼ିଚାଲେ । ଲଳିତାର ସନ୍ତାନ ସଂଖ୍ୟା ବୃଦ୍ଧିପାଏ । ବୃନ୍ଦାବନର ନିଃସ୍ୱାର୍ଥପର ମନୋଭାବ ହେତୁ ପରିବାରଟି କୌଣସି ମତେ ବଂଚି ରହିଥାଏ ମାତ୍ର । ନିୟମିତ ଅତ୍ୟାଚାରରେ ବିଦ୍ୟାଧରର ଦେହ ଭାଙ୍ଗିଯାଇ ସେ ଶଯ୍ୟାଶାୟୀ ହୁଏ । ଖବର ପାଇ ଗାଁରୁ ମାଆ ଆସନ୍ତି । କଙ୍କାଳସାର ପୁତ୍ର, ହତଶିରୀ ନିୟତ ସେବା ନିରତା ପୁତ୍ରବଧୂ ଏବଂ ପରିବାରର ଅବସ୍ଥା ଦେଖି ତାଙ୍କର ପାଷାଣ ହୃଦୟ ତରଳି ଯାଏ । ସେ ଏଥର ବଧୂ ସହିତ ସଂସାରର ହାଲ୍ ଧରି ବସିପଡ଼ନ୍ତି । ବିଦ୍ୟାଧର ସବୁ ଶୁଣି କହେ, ବୋଉ ସେତିକିବେଳେ ଯଦି ଇମିତି ହୋଇଥାଆନ୍ତା, ଆଜି ମୋ ଦଶା ଯା' ହୋଇଥାଆନ୍ତା କି ? ମାଆଙ୍କର ପରିବର୍ତ୍ତିତ ରୂପ ଓ ବ୍ୟବହାର ଦେଖି ପରିତୃପ୍ତ ହେବା ପାଇଁ ସେ କିନ୍ତୁ ବେଶୀଦିନ ବଂଚି ରହେ ନାହିଁ । ରାଜ ରୋଗର ଶିକାର ହୋଇ ଅକାଳରେ ବିଦାୟ ନିଏ । ଲଳିତାର ଜୀବନ କିନ୍ତୁ ସୁଖ ଦୁଃଖର ଛାଇ ଅନ୍ଧାର ଭିତରେ ଲୁଚକାଳି ଖେଳୁ ଖେଳୁ ଆଗକୁ ବଢ଼ି ଚାଲେ । ସେ ପୁଅବାହା କରି ବୋହୂ ଆଣେ ଝିଅମାନଙ୍କୁ ପର ଘରୀ କରେ । ଇତି ମଧରେ ବିଧବା ଯାଆ, ନଣନ୍ଦ ଓ ଶାଶୁଙ୍କର ମାନସିକ ପରିବର୍ତ୍ତନ ହୋଇ ସାରିଥିବାରୁ ଶାନ୍ତି ଏକ ପ୍ରକାର ଫେରି ଆସିଥାଏ । ଶାଶୁ ବୋହୂକୁ କହିଲେ- ମା', ତୋରି ପରଶରେ ଆମର ଲୁହା ମନ ସୁନା ହେଲା । 'ବୋହୂ ପାଇ ନଥିଲି ଯେ, ପରଶମଣି ପାଇଥିଲି, କିନ୍ତୁ ଆପଣା ଦୋଷରୁ ହରେଇଲି ।' ପରିବାରରେ ପୂର୍ଣ୍ଣ ଶାନ୍ତି ପ୍ରତିଷ୍ଠିତ ହୋଇଥିଲେ ମଧ ଲଳିତାର ମନ ସଂସାରରୁ ଛାଡ଼ିଯାଇଥାଏ । ଶାଶୁଙ୍କର ମୃତ୍ୟୁପରେ ସେ ସନ୍ନ୍ୟାସ ଗ୍ରହଣ କରି ସେବା ବ୍ରତରେ ବ୍ରତୀ ହୋଇ ଶେଷ ଜୀବନ ପୁରୀ ଧାମରେ କଟାଇଦିଏ ।

'ପରଶମଣି' ହେଉଛି ଏଠାର ମଧବିତ୍ତ ପାରିବାରିକ ଜୀବନର ଖଣ୍ଡିଏ ଉଜ୍ଜ୍ୱଳ ଚିତ୍ର ଯେଉଁଥିରେ ପାରିବାରିକ ଜୀବନରେ ସମ୍ପର୍କର ମହତ୍ତ୍ୱ ସମ୍ପର୍କରେ ଆଲୋଚନା କରାଯାଇଛି । ମନର ସଂକୀର୍ଣ୍ଣତା, ଈର୍ଷା ଅସୂୟା, ଅହଙ୍କାର, ଗର୍ବ, ଆତ୍ମବଡ଼ିମା ଏବଂ ଅସୁରକ୍ଷା ଭାବନା ପରିବାରକୁ କେଉଁ ସ୍ଥିତିରେ ନେଇ ପହଞ୍ଚାଇ ଦିଏ ଲେଖିକା ଲଳିତା ମାଧମରେ ତାହା ଦେଖାଇ ଦେଇଛନ୍ତି । ସୁଖ ଆଉ ଦୁଃଖକୁ ନେଇ ଜୀବନର ଯେଉଁ ପୂର୍ଣ୍ଣରୂପ କୁନ୍ତଳାକୁମାରୀ ବଡ଼ ଆନ୍ତରିକ ଭାବେ ତାହାର ଚିତ୍ର ଅଙ୍କନ କରିଛନ୍ତି । ସୁଖ କାମନାରେ ଆଜୀବନ ଦୁଃଖ ଭିତରେ ଘାଣ୍ଟି ହେଉ ହେଉ ନାୟିକା ଲଳିତା କିଭଳି ଏହାକୁ ଅତିକ୍ରମ କରିବାକୁ ଚେଷ୍ଟା କରି ଶେଷରେ ସଫଳ ହୋଇଛି, ତାହା ଦେଖାଇ ଦେଇଛନ୍ତି । ସୁଖ ଆଉ ଦୁଃଖର ଏହି ଅଦ୍‌ଭୁତ ଲୁଚକାଳି ଖେଳ

ଭିତରେ ଲଳିତା ହେଉଛି କୁନ୍ତଳା କୁମାରୀଙ୍କର ଏକ ବିସ୍ମୟଜନକ ଆବିଷ୍କାର ।

ନାରୀ ନିଜର ସହନଶୀଳତା, ସେବାମନୋଭାବ ଏବଂ ତ୍ୟାଗ ପରାୟଣତା ଦ୍ୱାରା ଧରାକୁ ସ୍ୱର୍ଗରେ ପରିଣତ କରିପାରେ ଯେମିତି, ସେହିଭଳି ନିଜର ସଂକୀର୍ଣ୍ଣ ସ୍ୱାର୍ଥଗତ ମନୋଭାବରୁ ପରିବାରରେ ବିଷାକ୍ତ ପରିମଣ୍ଡଳର ସୃଷ୍ଟି କରିପାରେ ଠିକ୍ ସେମିତି । ତଥାପି ସେ ଶକ୍ତିମୟୀ, ପୁଣି ଶକ୍ତି ଲାଭ କରାଯାଏ ତ୍ୟାଗ ମନୋଭାବଦ୍ୱାରା । ପରିବାର ପାଇଁ ନିଜକୁ ତିଳ ତିଳ କରି ଉତ୍ସର୍ଗ କରି ଦେଇ ଲଳିତା ଏହା ହିଁ ପ୍ରମାଣ କରି ଦେଇଛି । କୁନ୍ତଳା କୁମାରୀ ଅନ୍ତତଃ ଲଳିତା ମାଧ୍ୟମରେ ଏହା ହିଁ ପ୍ରତିପାଦନ କରିଛନ୍ତି ।

ରଘୁ ଅରକ୍ଷିତ (୧୯୨୮) ତାଙ୍କର ପ୍ରକାଶିତ ଉପନ୍ୟାସଗୁଡ଼ିକ ମଧ୍ୟରେ କେବଳ ଆକାରରେ ବଡ଼ ନୁହେଁ । ଘଟଣା ବିନ୍ୟାସର ଆନୁପାତିକତା, ଚରିତ୍ର ବିଶ୍ଳେଷଣର ବୈଚିତ୍ର୍ୟ, ବର୍ଣ୍ଣନା ବିଳାସର ସଂଯମତା, ମନୋ ବିଶ୍ଳେଷଣର ଅପୂର୍ବ ଶକ୍ତିମତ୍ତା, ଦ୍ୱନ୍ଦ୍ୱ ଏବଂ ସଂଘର୍ଷର ଯଥାଯଥ ବିନ୍ୟାସ, ଉତ୍କଣ୍ଠା ସୃଷ୍ଟିର କଳାତ୍ମକତା ଦୃଷ୍ଟିରୁ ଏହାର ଶୈଳ୍ପିକ ଗୁରୁତ୍ୱକୁ ମଧ୍ୟ ସ୍ୱୀକାର କରିବାକୁ ହେବ । ଏହା ମଧ୍ୟ କୁହାଯାଇପାରିବ ଯେ ଅଠେଇଶି ବର୍ଷୀୟା ତରୁଣୀ ଔପନ୍ୟାସିକାଙ୍କ ଅନୁଭବ ଓ ଅଭିଜ୍ଞତା ଏଠାରେ ସମଧିକ ପରିପକ୍ୱ ଏବଂ ତାହାରି ଦ୍ୱାରା ପ୍ରେରିତ ହୋଇ ସେ ନିଜର ଅହେତୁକ ଉଚ୍ଛ୍ୱାସକୁ ନିୟନ୍ତ୍ରଣ କରି ପୁଷ୍ପରମ ଉପଲଖଣ୍ଡର ଏକ ମନୋରମ ମାଲ୍ୟ ରଚନା କରିଛନ୍ତି । ତାହା ତାଙ୍କର ଅର୍ଜିତଜ୍ଞାନ, ଉତ୍ସାରିତ ଅନୁଭବ ଓ ଆହୃତ ଚିନ୍ତାର ସହଯୋଗରେ ଯଥାର୍ଥରେ ସ୍ମରଣୀୟ ରୂପ ନେଇଛି । 'ରଘୁ ଅରକ୍ଷିତ' ଓଡ଼ିଆ ଉପନ୍ୟାସର ଇତିହାସରେ ଏକ ସ୍ଥାୟୀ ସଂଯୋଗ ।

ଉପନ୍ୟାସ ପାଇଁ କୁନ୍ତଳା ଏକ ବିଶାଳ ପଟ୍ଟଭୂମି ଗ୍ରହଣ କରିଛନ୍ତି । ଓଡ଼ିଶାର ଏକ ଅନାମଧେୟ ପଲ୍ଲୀରୁ ଏହାର ଆରମ୍ଭ ହୋଇ ଯଥାକ୍ରମେ କଟକ, କଲିକତା, ଦାର୍ଜିଲିଂ, ଏଭଳିକି ସୁଦୂର ବର୍ମା ପର୍ଯ୍ୟନ୍ତ ପ୍ରସାରିତ ହୋଇଛି । ରଘୁ ନାମକ ଏକ ପିତୃମାତୃହୀନ ପରୋପଜୀବୀ ଅସହାୟ ବାଳକର ଜୀବନ ସଂଘର୍ଷର କାହାଣୀ ହିଁ ଏଥିରେ ବର୍ଣ୍ଣିତ ହୋଇଛି । ଅନାଥ ରଘୁ ନିଷ୍ଠୁର କକାର ଅତ୍ୟାଚାରରେ ଜୀବନର ମାୟା ପ୍ରାୟ ତ୍ୟାଗ କରିଥିବାବେଳେ ଅଚାନକ ତା' ଆଡ଼କୁ ମମତାର ହାତ ଲମ୍ବି ଆସୁଛି ବ୍ୟବସାୟୀ ଚନ୍ଦ୍ରଶେଖରଙ୍କ ପତ୍ନୀ ସରସ୍ୱତୀଙ୍କ ଆଡୁ । ତାଙ୍କରି ଉଦ୍‌ଯୋଗରେ ସେ କବିରାଜ ଜଗନ୍ନାଥଙ୍କ ଘରେ ସ୍ଥାୟୀ ଆଶ୍ରୟ ପାଇଯାଉଛି । ଚନ୍ଦ୍ରଶେଖରଙ୍କ ପୁତ୍ରବାବୁ ଏବଂ କନ୍ୟା ସୀତା ସହିତ ତାହାର ସୌଖ୍ୟ ସ୍ଥାପିତ ହେଉଛି । ସୀତା ସହିତ ତା'ର ଏହି ଅପାପବିଦ୍ଧ ବନ୍ଧୁତ୍ୱ କୈଶୋରରେ କିଭଳି ପ୍ରେମରେ ପରିଣତ ହେଉଛି ଏବଂ ବୟସ ବଢ଼ିବା ସଂଗେ ସଂଗେ ଏହା ତୀବ୍ର ଆସକ୍ତିରେ ପରିଣତ ହେବାରୁ କିଭଳି ପରିଣତିରେ ଦୁଇଟି ସମ୍ଭାବନାମୟ ଜୀବନର ବିପର୍ଯ୍ୟୟର କାରଣ ହୋଇଛି, କୁନ୍ତଳାକୁମାରୀ ବଡ଼ ନିପୁଣ ଭାବରେ ଦେଖାଇଛନ୍ତି । ରଘୁ ତାଙ୍କର ନିଷ୍ଠୁର କକେଇର ନିର୍ଯ୍ୟାତନା ମଧ୍ୟରୁ ରକ୍ଷା ପାଇ ଜଗନ୍ନାଥ କବିରାଜ ଆଉ ତାରାମଣିଙ୍କର ସ୍ନେହଚ୍ଛାୟାର ନିରାପଦ ଆଶ୍ରୟରେ ଏକ ସମ୍ଭାବନାମୟ କୈଶୋର ଏବଂ ଆଦ୍ୟ ଯୌବନ କଟାଇ ଭବିଷ୍ୟତ ଜୀବନ ନିମନ୍ତେ ନିଜକୁ ପ୍ରସ୍ତୁତ କରୁଥିବାବେଳେ

ସୀତା ସହିତ ତା'ର ସମ୍ପର୍କ ନିବିଡ଼ ହୋଉଛି । ଏତିକିବେଳେ ସୀତାର ବିବାହ ସ୍ଥିର ହେଉଛି ପିତା ବୟସୀ ବୃଦ୍ଧ ବୃନ୍ଦାବନ ସହିତ । ବୃନ୍ଦାବନ ଜମିଦାର- ଚନ୍ଦ୍ରଶେଖରଙ୍କ ସମାସ୍କନ୍ଧ ବନ୍ଧୁ । ପିତୃଦତ୍ତ କନ୍ୟା- ପୁଣି ସମାଜର ସମର୍ଥନ ମଧ୍ୟ ଅଛି । ଏଥିରେ ଦୁଇଟି କିଶୋର ହୃଦୟର ବ୍ୟଥା କିଏ ବୁଝିବ ? ସରସ୍ୱତୀ ଅବଶ୍ୟ ଆପତ୍ତି କରନ୍ତି । ତେବେ ନାରୀର ମତାମତକୁ ସମାଜ କୋଉକାଳେ ବିଚାରକୁ ନିଏ ଯେ, ଚନ୍ଦ୍ରଶେଖର ତାହା ଶୁଣନ୍ତେ ? ବିବାହ ସ୍ଥିର ହୋଇଯାଏ । ସହସା ନିୟତିର କୁହୁକରେ ସାମାନ୍ୟ ଅସୁସ୍ଥତାରେ ବୃନ୍ଦାବନଙ୍କର ମୃତ୍ୟୁ ହୋଇଯାଇ ଦୁଇ ପ୍ରଣୟୀଙ୍କର ଭବିଷ୍ୟତ ପାଇଁ ଆଶାର ସାମାନ୍ୟ କିରଣ ଦେଖାଯାଏ । ସୀତା ପ୍ରାୟ ବରପୂର୍ବା ହୋଇ ଅବିବାହିତ ରହିଯାଇଥିବାରୁ ହଠାତ୍ ଅନ୍ୟ କୌଣସି ଉପଯୁକ୍ତ ପାତ୍ରର ସନ୍ଧାନ କରି ନ ପାରି ଚୌଧୁରୀ ତା' ସହିତ ରଘୁର ବିବାହ ନିମନ୍ତେ ସରସ୍ୱରତୀଙ୍କର ପ୍ରସ୍ତାବକୁ 'ଦେଖିବା' ବୋଲି କହି ଅର୍ଦ୍ଧ ସମର୍ଥନର ମୋହର ଲଗାଇ ଦେବାରୁ ପରିବାରରେ ଆନନ୍ଦର ସ୍ରୋତ ବହିଯାଏ । ତେବେ ଇତି ମଧ୍ୟରେ ଚରିତ୍ରହୀନ ଜମିଦାର ଦିବାକର ସୀତାକୁ ବିବାହ କରିବା ନିମନ୍ତେ ପ୍ରସ୍ତାବ ପଠାଇବାରୁ ଆଶା ନିରାଶାରେ ପରିଣତ ହେବାକୁ ମୁହୂର୍ତ୍ତେ ମଧ୍ୟ ଲାଗେ ନାହିଁ । ରଘୁନାଥ ଘର ଛାଡ଼ି ଦୁଃଖରେ କଲିକତା ପଳାଇଯାଏ । ସୀତାର ବିବାହ ଦିବାକର ସହିତ ହୋଇଯାଏ ଏବଂ ତା'ର ଦୁଃସହ ଜୀବନଯାତ୍ରା ଆରମ୍ଭ ହୁଏ । ଘଟଣାକ୍ରମେ ରଘୁ ସହିତ ଉଦାର ବାଦୀ ଧନୀକ ଉମେଶ ଦତ୍ତଙ୍କର ଯୋଗାଯୋଗ ହୁଏ ଏବଂ ସେ ତାଙ୍କ ପରିବାରରେ ଆଶ୍ରା ପାଇ ତାଙ୍କରି ସହାୟତାରେ ନିଜର ଅସମ୍ପୂର୍ଣ୍ଣ ଶିକ୍ଷା ସମାପ୍ତ କରି ଏମ୍.ଏ. ପାସ୍ କରିଯାଏ । ଉମେଶ ବାବୁ ତାକୁ ନିଜର ବ୍ୟବସାୟର ଦେଖାଶୁଣା କରିବା ନିମନ୍ତେ ରେଙ୍ଗୁନ୍ ପଠାଇ ଦିଅନ୍ତି ଏବଂ ନିଜ କନ୍ୟା ମାୟା ସହିତ ତାହାର ବିବାହ ଦେବା ପାଇଁ ସ୍ଥିର କରନ୍ତି । କ୍ରମେ ରଘୁର ମନରୁ ସୀତାର ସ୍ମୃତିମ୍ଳାନ ହୋଇଆସେ ଏବଂ ସେଇ ସ୍ଥାନରେ ମାୟାର ଚିତ୍ର କ୍ରମଶଃ ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ହୋଇ ଫୁଟି ଦିଶେ । ଉମେଶବାବୁଙ୍କ ଆଗ୍ରହରେ ରଘୁ ସହିତ ମାୟାର ବିବାହ ହୋଇଯାଏ । ନିଜର ପୂର୍ବଜୀବନକୁ ଦୁଃସ୍ୱପ୍ନ ଭଳି ଭୁଲି ମାୟା ସହିତ ସଂସାର ଯାତ୍ରା ଆରମ୍ଭ କରୁ କରୁ ପୁଣି ଏକ ଦୁଃଖଦ ଘଟଣା ଘଟିଯାଏ । ମାୟାର ମୃତ୍ୟୁ ହୁଏ । ଇତି ମଧରେ ସୀତା ବିଧବା ହୋଇ ଯାଇଥିବାରୁ ରଘୁ ତାକୁ ବିବାହ କରିବାକୁ ଚେଷ୍ଟା କରି ତହିଁରେ ଅସଫଳ ହୁଏ । ଶେଷରେ ସେ ଦେଶ ସେବାବ୍ରତରେ ଦୀକ୍ଷିତ ହୋଇ ଦୁର୍ଗତ ଜନତାର ସେବାରେ ନିଜକୁ ଉତ୍ସର୍ଗ କରିଦିଏ । ଲକ୍ଷ୍ମୀମଣ୍ଟଳ ତାକୁ କହନ୍ତି, 'ଫେରିଯାଅ ତୁମେ ସେହି ନୀଳାଚଳ ଅଞ୍ଚଳ ପୁଣ୍ୟ ଉତ୍କଳଭୂମିକୁ, ସେଇ ତୁମର ମାଆ । ସେଇ ତୁମର ସେବା ପାଇବାର ଯୋଗ୍ୟ । ତାହାର ଦୁଃଖ ଦୁର୍ଦ୍ଦଶା ଦୂର କରିବା ତୁମର ସର୍ବାଦୌ କର୍ତ୍ତବ୍ୟ ।' ଆଲୋଚକ ନରେନ୍ଦ୍ର ନାଥ ମିଶ୍ରଙ୍କ ମତରେ 'ରଘୁ ଅରକ୍ଷିତ, ଉପନ୍ୟାସରେ ପ୍ରଥମେ ଆମେ ଏକ ସର୍ବଭାରତୀୟ ପୃଷ୍ଠଭୂମି ଦେଖିବାକୁ ପାଉ । ବ୍ରହ୍ମଦେଶ, ବଂଗ ଓ ଉତ୍କଳର ଜୀବନଧାରା ଘେନି ଲେଖିକାଙ୍କ ବାସ୍ତବ ଅନୁଭୂତି ରଘୁ ଅରକ୍ଷିତରେ ପ୍ରକାଶ ପାଇଛି । ଏକଦା ଅରକ୍ଷିତ ରଘୁ ଦେଶର ଅଗଣିତ ଅରକ୍ଷଙ୍କୁ ରକ୍ଷା କରିବା ଲାଗି ସ୍ୱାଧୀନତାର ମହାନ୍ ଆନ୍ଦୋଳନରେ ଆତ୍ମ ନିୟୋଗ କରିଛି । ଭାରତୀୟ ସମାଜର ଅଗଣିତ ସମସ୍ୟାର ସମାଧାନ ଦାରିଦ୍ର୍ୟ ଓ କୁସଂସ୍କାରଗ୍ରସ୍ତ ଜନସାଧାରଣଙ୍କ ଦୁଃଖମୋଚନ ଏକମାତ୍ର ସ୍ୱାଧୀନତା ଦ୍ୱାରା ସମ୍ଭବ ହୋଇପାରେ- ଏଇ ଦୃଢ଼ ବିଶ୍ୱାସ କୁନ୍ତଳାକୁମାରୀ

ନାୟକ ରଘୁର ଚରିତ୍ରରେ ଫୁଟାଇଛନ୍ତି । ସମାଜ ସଂସ୍କାରମୂଳକ ଉପନ୍ୟାସ କୁନ୍ତଳା କୁମାରୀଙ୍କ ପୂର୍ବରୁ ଲିଖିତ ହୋଇଥିଲା । ମାତ୍ର ସମାଜ ସଂସ୍କାରର ବଳିଷ୍ଠ ଧାରାକୁ ରାଜନୀତିକ ଆଦର୍ଶରେ ପରିଣତ କରିବାର ପ୍ରୟାସ କ୍ୱଚିତ୍ ଦେଖାଯାଇଥିଲା । ସେହି ଦିଗରୁ 'ରଘୁ ଅରକ୍ଷିତ' ଓଡ଼ିଆରେ ପ୍ରଥମ ରାଜନୈତିକ ଉପନ୍ୟାସ (ଆଧୁନିକ ଓଡ଼ିଆ କଥା ସାହିତ୍ୟ : ପୃ : ୬୬) ।

ସୁଖପାଠ୍ୟ ଏହି ଉପନ୍ୟାସର ପରିକଳ୍ପନା ଏକ ବ୍ୟାପକ ପୃଷ୍ଠଭୂମିରେ । ଅରକ୍ଷିତ ରୂପରେ ରଘୁ ଦିନେ ଏ ସଂସାରର ଆଲୋକ ଦେଖିଥିଲା ଏବଂ ପୁନର୍ବାର ସେ ସେଇ ଅରକ୍ଷିତମାନଙ୍କ ପାଖକୁ ହିଁ ଫେରିଯାଉଛି– ଏ କଳ୍ପନାଟି ବେଶ୍ ନାଟକୀୟ । କବି ଗଂଗାଧର ଲେଖିଛନ୍ତି–
"ତଳୁ ଉପରକୁ ଉଠିଥିବା ଲୋକ
ଜାଣିଥାଏ ତଳକଥା
ଉଚ୍ଚାସନେ ଥାଇ ଯତ୍ନ କରିଥାଏ
ହରିବାକୁ ତଳ ବ୍ୟଥା ।"

ରଘୁର ଜୀବନରେ ଲେଖିକା ଏହି ଉକ୍ତିର ସାର୍ଥକତା ପ୍ରମାଣିତ କରିଛନ୍ତି । ସେଥିପାଇଁ ତାଙ୍କୁ ପ୍ରଶଂସା କରାଯାଇପାରେ । ଏହାର ଦୋଷତ୍ରୁଟି ଏବଂ ସୀମାବଦ୍ଧତା ତଥା ଶିଳ୍ପଦୃଷ୍ଟିରୁ ଏହାର ଅସଫଳତା କଥା ଯେତେ କୁହାଗଲେ ମଧ୍ୟ ଓଡ଼ିଆ ଉପନ୍ୟାସର ଇତିହାସରେ ଏହାର ଯେ ଏକ ସ୍ଥାୟୀ ଆସନ ରହିବ, ଏ ବିଷୟରେ ଆମେ ନିଃସନ୍ଦେହ ।

ଏହାପରେ ତାଙ୍କର ଶେଷ ଅସମ୍ପୂର୍ଣ୍ଣ ଉପନ୍ୟାସ 'ଚିତ୍ରପଟ' ପ୍ରସଙ୍ଗ । ସମ୍ଭବତଃ ଦିଲ୍ଲୀ-ପ୍ରବାସ ସମୟରେ ଏହାର ପରିକଳ୍ପନା ଏବଂ କର୍ମ ଜୀବନର ନାନା ଜଞ୍ଜାଳ ଏବଂ ପାରିବାରିକ ଦୁର୍ଭୋଗ ହେତୁ ଲେଖିକା ଏହାକୁ ସଂପୂର୍ଣ୍ଣ କରିପାରି ନାହାନ୍ତି । ଏଥିରେ ସମୁଦାୟ ନଅଟି ଚିତ୍ରପଟ ରହିଛି । ପାଶ୍ଚାତ୍ୟ ଶିକ୍ଷା ଲାଭ କରିବା ପରେ ସେ କାଳର ହିନ୍ଦୁ ଯୁବକମାନେ କିଭଳି ଧର୍ମାନ୍ତର ଗ୍ରହଣ କରୁଥିଲେ ଏଥିରେ ତାହା ବର୍ଣ୍ଣିତ ହୋଇଛି । ଦୀନା ଏବଂ ଗେଲେଇ ପୁତ୍ର ଜଗନାଥ ଖ୍ରୀଷ୍ଟଧର୍ମ ଗ୍ରହଣ କରି ଜନାଥନରେ ପରିଣତ ହୋଇଛି । କଲିକତାରେ ଚାକିରୀ କରୁଥିବା ସମୟରେ ସେ ଜଣେ ଚରିତ୍ରହୀନ ବଂଗାଳୀ ଯୁବକର କବଳରେ ପଡ଼ି ମୃତ୍ୟୁର ସମ୍ମୁଖୀନ ହୋଇଥିବାବେଳେ ଏକ ମୁସଲମାନ ପରିବାରରୁ ତାକୁ ଉଦ୍ଧାର କରାଯାଉଛି । (ରଘୁ ଅରକ୍ଷିତ ଉପନ୍ୟାସର ନାୟକ ରଘୁର ଜୀବନରେ ମଧ୍ୟ ଏହିଭଳି ଦୁର୍ବିପାକ ଘଟିଥିବା ଲେଖିକା ଦେଖାଇଛନ୍ତି) ପରୋପକାରୀ ଖ୍ରୀଷ୍ଟିୟାନ୍ ବୀରବାବୁଙ୍କର ପାଳିତା କନ୍ୟା ଶଶୀ ସହିତ ଜନାଥନର ବିବାହ ହେଉଛି ସତ୍ୟ, ମାତ୍ର ଅଳ୍ପ ଦିନପରେ ଶଶୀର ମୃତ୍ୟୁ ହୋଇଯାଉଛି । ପ୍ରସଙ୍ଗ କ୍ରମେ ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ମୃତ୍ୟୁଞ୍ଜୟ ରଥ ୧୯୧୫ ମସିହାରେ 'ଅଦ୍ଭୁତ ପରିଣାମ' ନାମକ ଯେଉଁ ଉପନ୍ୟାସ ରଚନା କରନ୍ତି, 'ଚିତ୍ରପଟ' ଉପନ୍ୟାସର କଥାବସ୍ତୁ ସହିତ ତାହାର କାହାଣୀ ଭାଗର ଅନେକ ସାମଞ୍ଜସ୍ୟ ରହିଛି । ଖୋର୍ଦ୍ଧା ମୂଳକର ସମ୍ପନ୍ନ ଗୃହସ୍ଥ ହରିସ୍ୱାଇଁଙ୍କର ପୁତ୍ର ମୋହନ କଟକ ପାଠ ପଢ଼ିବାକୁ ଆସି ଶେଷରେ ନାରୀର ମୋହିନୀ ଆକର୍ଷଣରେ ଖ୍ରୀଷ୍ଟଧର୍ମ ଗ୍ରହଣ କରୁଛି ଏବଂ ପ୍ରେମିକା ଲୀଳାବତୀକୁ ବିବାହ କରିବାକୁ ବାଧ୍ୟ ହେଉଛି । ଏପରି ବିବାହର

ପରିଣାମ କଦାପି ସୁଖକର ହୁଏ ନାହିଁ । ମୋହନ ନିଜର ପ୍ରେମିକା ପତ୍ନୀ ଏବଂ ସନ୍ତାନମାନଙ୍କୁ ହତ୍ୟା କରିବାକୁ ଉଦ୍ୟମ କରି ତହିଁରେ ଆଂଶିକ ସଫଳତା ଲାଭ କରୁଛି ଅର୍ଥାତ୍ ସନ୍ତାନ ଦୁହେଁ ମୃତ୍ୟୁବରଣ କରିଥିବାବେଳେ ପତ୍ନୀ ରକ୍ଷା ପାଇଯାଉଛି । କୋର୍ଟ ବିଚାରରେ ମୋହନଙ୍କୁ ଦ୍ୱୀପାନ୍ତର ଦଣ୍ଡ ଦିଆଯାଉଛି । ମୃତ୍ୟୁଞ୍ଜୟ ଏହି ଉପନ୍ୟାସ ରଚନା କରିଥିଲେ ଏକ ସତ୍ୟ ଘଟଣାର ଆଧାରରେ । ଧର୍ମାନ୍ତରର ପରିଣାମ ଯେ କଦାପି ଶୁଭଙ୍କର ହୁଏ ନାହିଁ, ଏହା ହିଁ ଦେଖାଇଦେବା ଥିଲା, ଏହି ଉପନ୍ୟାସର ଲକ୍ଷ୍ୟ । ସମ୍ଭବତଃ କୁନ୍ତଳାଙ୍କୁ ଏହି କାହାଣୀଟି ବେଶ୍ ପ୍ରଭାବିତ କରିଥିଲା । ବାରମ୍ବାର ଧର୍ମ ପରିବର୍ତ୍ତନ କରିଥିବାରୁ କିମ୍ବା କରିବାକୁ ବାଧ ହୋଇଥିବାରୁ ତାଙ୍କର ଜୀବନ ଯେଉଁଭଳି ଝଞ୍ଜା ନକ୍ଷତ୍ର ସମୁଦ୍ର ମଧ୍ୟସ୍ଥ ଜର୍ଜରପୋତ ଭଳି ଚରମ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଥିଲା, ତାହା ମର୍ମେ ମର୍ମେ ଅନୁଭବ କରି, ସେ ଏହି ଉପନ୍ୟାସଟିକୁ ଏହାର ଏକ ଦୃଷ୍ଟାନ୍ତ ସ୍ୱରୂପ ପାଠକମାନଙ୍କ ନିକଟରେ ଉପସ୍ଥାପିତ କରିବାକୁ ଚାହିଁଥିଲେ । ଏହାର ଶୈଳ୍ପିକ ସୁଷମା ସମ୍ପର୍କରେ କୌଣସି ମନ୍ତବ୍ୟ ଦେବା ନିଷ୍ପ୍ରୟୋଜନ ଏହି କାରଣରୁ ଯେ , ଏହାର ପରିକଳ୍ପନା ପଛରେ ଲେଖିକାଙ୍କର କୌଣସି ସୁପରିକଳ୍ପିତ ଯୋଜନା ଥିବାର ମନେହୁଏ ନାହିଁ । ମନର ଗୋଟିଏ ଭାବକୁ ରୂପାୟିତ କରିବାକୁ ସ୍ଥିର କରି ସେ ତାହାକୁ ଗଳ୍ପାକାରରେ ପରିବେଷଣ କରିଯାଇଛନ୍ତି ମାତ୍ର ।

ପାଞ୍ଚଟି ପୂର୍ଣ୍ଣାଙ୍ଗ ଉପନ୍ୟାସ ଏବଂ ଗୋଟିଏ ଅସମ୍ପୂର୍ଣ୍ଣ ଉପନ୍ୟାସକୁ ନେଇ କୁନ୍ତଳା କୁମାରୀଙ୍କର କଥା-ସାହିତ୍ୟର ବିସ୍ତାର । 'ତେବେ କୁନ୍ତଳା କୁମାରୀ ମୁଖ୍ୟତଃ କବି, ଗୀତି-କବି । ଉପନ୍ୟାସ ରଚନା ପ୍ରୟାସ ତାଙ୍କର ଦୀର୍ଘକାଳ ସ୍ଥାୟୀ ନୁହେଁ । ମାତ୍ର ଦଶବର୍ଷ ମଧ୍ୟରେ ଏହା ସୀମିତ । ଜୀବନର ଶେଷଭାଗ ପର୍ଯ୍ୟନ୍ତ ସେ ଏହି ସାଧନାକୁ ଅକ୍ଷୁର୍ଣ୍ଣ ରଖି ନ ଥିଲେ । କାବ୍ୟ କବିତା ତାଙ୍କର ଏକାନ୍ତ ଅନ୍ତରର । ଉପନ୍ୟାସ ବାହ୍ୟିକ ସଂସାର କ୍ରିୟାର ପ୍ରତିରୂପ ।' ଡଃ କୁଞ୍ଜବିହାରୀ ଦାଶଙ୍କର ଏହି ମନ୍ତବ୍ୟକୁ ମୋଟାମୋଟି ଭାବରେ ଗ୍ରହଣ କରି ନିଆଯାଇ କୁହାଯାଇପାରେ ଯେ, କବିତ୍ୱ ସହିତ କୁନ୍ତଳା କୁମାରୀଙ୍କଠାରେ ସଂସ୍କାର ପ୍ରବଣତା ମଧ୍ୟ ଏକ ସ୍ୱତଃସ୍ଫୁର୍ତ୍ତ ଆବେଗ ରୂପେ ସୃଷ୍ଟି ହୋଇଥିଲା ଏବଂ ପଦ୍ୟ ଅପେକ୍ଷା ଗଦ୍ୟରେ ସଂସ୍କାର ଚିନ୍ତାର ବିଶ୍ଳେଷଣ ଅଧିକ ସ୍ୱଚ୍ଛନ୍ଦ ତଥା ସାବଲୀଳ ହୋଇପାରୁଥିବାରୁ ସେ ଏଥିପାଇଁ ଗଦ୍ୟର ଆଶ୍ରୟ ନେଇଥିଲେ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଗଦ୍ୟ ଚର୍ଚ୍ଚାରୁ ବିରତ ରହି ନଥିଲେ ମଧ୍ୟ । 'ଚିତ୍ରପଟ' ଉପନ୍ୟାସ ହେଉଛି ଏହାର ଦୃଷ୍ଟାନ୍ତ ।

ତାଙ୍କ ଗଦ୍ୟ ସାହିତ୍ୟ ବିରୁଦ୍ଧରେ ପ୍ରଧାନ ଅଭିଯୋଗ ହେଉଛି ସେ ବଂଗଳା ଭାଷା ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଛନ୍ତି । ଏ ଅଭିଯୋଗ ମଧ୍ୟ ଓଡ଼ିଆ ସାହିତ୍ୟର ସେ ଯୁଗ ତଥା ଏ ଯୁଗର ବହୁ ପ୍ରତିଷ୍ଠିତ ସାହିତ୍ୟିକଙ୍କ ବିରୁଦ୍ଧରେ କରାଯାଇପାରିବ । ଏହାର କାରଣ ସ୍ୱରୂପ କୁହାଯାଇପାରିବ ଯେ, ବହୁ ପରିମାଣରେ ଉପଲବ୍ଧ ସେ ଦେଶୀୟ ସାହିତ୍ୟର ପାଠ ଫଳରେ ନିଜ ଅଜ୍ଞାତସାରରେ ମନ ଉପରେ ସେଠାକାର ଭାଷାର ଏକ ସ୍ଥାୟୀ ଛାପ ପଡ଼ିଯାଏ । ନିଜ ସୃଷ୍ଟିରେ ସ୍ରଷ୍ଟା ତାକୁ ରୂପାୟିତ କରିଦିଅନ୍ତି । ତେବେ ସ୍ଥାନୀୟ ଜନଜୀବନର ଭାଷା ସୃଷ୍ଟିରେ ଲେଖିକାଙ୍କର କୃତିତ୍ୱକୁ ମଧ୍ୟ ଅସ୍ୱୀକାର କରାଯାଇପାରିବ ନାହିଁ । ତାହାର ଗୋଟିଏ ଦୃଷ୍ଟାନ୍ତ...."ଆଜି ବଡ଼ି ଅନ୍ଧାରୁ ଟପର ଟପରଝଡ଼ି କରୁଛି, ବେଳ ଦଶଘଡ଼ି ହେଲାଣି, ଛାଡ଼ିବାକୁ ନାହିଁ, ଆକାଶ

ଅନ୍ଧାର କରି କଳାହାଣ୍ଡିଆ ମେଘଟା ଉଠାଇଛି । କାନ୍ଥରେ ଗୋବର ଗାରଟା ମୋଟ କରି ଟାଣି ଦେଇ ଗୋବର ହାଣ୍ଡିଟା ରଖୁ ରଖୁ ରସକଳା ରଘୁକୁ ଅନାଇ କହିଲା- ପୁଅ, ଏ ବର୍ଷ କ'ଣ କେଲୁଣୀ ହାତରେ ଅଡ଼ା ?'' ଫକୀରମୋହନଙ୍କ ପରେ ଗ୍ରାମ-ଉତ୍କଳର ଏଭଳି ରସବନ୍ତ ଏବଂ ପ୍ରାଣବନ୍ତ ଭାଷା ପ୍ରୟୋଗରେ କେତେଜଣ ସାହିତ୍ୟିକ ଯଥାର୍ଥରେ ଦକ୍ଷତା ଅର୍ଜନ କରିଛନ୍ତି, ତାହା ଆହୁରି ଚିନ୍ତା କରିବାକୁ ପଡ଼ିବ । ପୁଣି ପଲ୍ଲୀ-ଉତ୍କଳର ରୀତିନୀତି ଆଚାର ବ୍ୟବହାର ଏବଂ ବାକ୍‌ବୈଭବ ପ୍ରୟୋଗ ଦକ୍ଷତା- ଖୋର୍ଦ୍ଧାର ସ୍ୱଳ୍ପ ରହଣୀ ଏବଂ କଟକ ଅବସ୍ଥାନ ମଧ୍ୟରେ ଲେଖିକା କିଭଳି ଆୟତ୍ତ କରି ପାରିଥିଲେ, ତାହା ମଧ୍ୟ ଗବେଷଣାର ବିଷୟ । ଏସବୁ ଶିକ୍ଷା, ଅନୁଧ୍ୟାନ ଏବଂ ବିଚାର ନିମନ୍ତେ ତାଙ୍କୁ ମିଳିଛି ମାତ୍ର ତେରଟି ବର୍ଷ (୧୯୧୫-୧୯୨୮) ତାହା ଭିତରେ ଅଛି ଛଅ ବର୍ଷର ଡାକ୍ତରୀ ଶିକ୍ଷା । ଆମ ମତରେ ପ୍ରତିଭାର ଶାଣିତ ଦୀପ୍ତି ନେଇ ଆତ୍ମପ୍ରକାଶ କରି ନଥିଲେ, ଭାଷା ପ୍ରୟୋଗରେ ତାଙ୍କର ଏଭଳି ସ୍ୱଚ୍ଛନ୍ଦତା କଦାପି ଆସି ପାରି ନଥାନ୍ତା । ପ୍ରତିଭା-ବିକାଶର ସମ୍ପୂର୍ଣ୍ଣ ସୁଯୋଗ ତାଙ୍କୁ ମିଳିଥିଲେ, ପୂର୍ଣ୍ଣ ବିକଶିତ ଶତଦଳ ତୁଲ୍ୟ ଏହା ଯେ, ସମଗ୍ର ଉତ୍କଳର ଚିତ୍ତର ସୁରଭି ବିକୀର୍ଣ୍ଣ କରିଥାଆନ୍ତା, ଏଥିରେ ସନ୍ଦେହ ନାହିଁ ।

ତାଙ୍କର କଥାସାହିତ୍ୟରେ ସେ ସାଧାରଣତଃ, ଗୋଟିଏ କଥା ଉପରେ ବେଶ୍ ଗୁରୁତ୍ୱ ଦେଇଛନ୍ତି । ସେ କାଳର ଓଡ଼ିଆ ସମାଜରେ ନାରୀର ପରତନ୍ତ୍ରତା- ବ୍ୟକ୍ତିତ୍ୱ ହୀନତା ତାଙ୍କୁ ଗଭୀର ଭାବରେ ଆଲୋଡ଼ିତ କରିଥିଲା । ଧନୀ ଦରିଦ୍ର, ମଧ୍ୟବିତ୍ତ ନିର୍ବିଶେଷରେ ନାରୀ ସମାଜକୁ ପରିବାର ଜୀବନରେ ଯେଉଁଭଳି ପୁରୁଷ ହସ୍ତର କ୍ରୀଡ଼ନକ ସ୍ୱରୂପ ଏକ ପ୍ରକାର ପରଜୀବୀର ଜୀବନ କଟାଇବାକୁ ପଡୁଥିଲା ତାହା ତାଙ୍କୁ ମର୍ମାହତ କରିଥିଲା । ନାରୀର ସ୍ୱଚ୍ଛନ୍ଦ ବ୍ୟବହାରର ଦୃଶ୍ୟ ସେ ଦେଖିଥିଲେ ସୁଦୂର ବର୍ମାରେ । ଓଡ଼ିଶାର ନାରୀମାନେ କ'ଣ ସେଭଳି ଜୀବନ ଜିଇଁ ପାରିବେ ନାହିଁ ? ଏହି ଚିନ୍ତାରୁ ହିଁ ତାଙ୍କର କଥା ସାହିତ୍ୟର ସୃଷ୍ଟି ? ତେଣୁ ସେ ସବୁ ମୁଖ୍ୟତଃ ନାରୀ କୈନ୍ଦ୍ରିକ ।

ସେ କାଳର ନାରୀ ଚରିତ୍ର ବିଶ୍ଳେଷଣରେ ଲେଖିକାଙ୍କର ଅନ୍ତର୍ଦୃଷ୍ଟି ତାଙ୍କୁ ସିଦ୍ଧିର ସେଇ କୋଟୀରେ ନେଇ ପହଞ୍ଚାଇ ଦେଇଛି, ଯେଉଁଠି କଥା ସମ୍ରାଟ ଫୀକରମୋହନଙ୍କର ସ୍ଥିତି । ସେ ନାରୀ ଅଭିଜାତ ବର୍ଗର ହୁଅନ୍ତୁ ଅବା ଖଟିଖିଆ ଶ୍ରମିକ ବର୍ଗର ହୁଅନ୍ତୁ, ସମାନ ଦକ୍ଷତା ଏବଂ ସାବଲୀଳତାର ସହିତ ସେମାନଙ୍କୁ ପାଠକମାନଙ୍କ ଦରବାରରେ ଆଣି ଉପସ୍ଥିତ କରିଛନ୍ତି । ତେବେ ଗୋଟିଏ ବିଷୟରେ ଫକୀରମୋହନଙ୍କର ନାରୀ ସମାଜଠାରୁ ତାଙ୍କ ନାରୀ ସୃଷ୍ଟିରେ ଭିନ୍ନତା ଲକ୍ଷ୍ୟ କରାଯାଇପାରେ । ଫକୀର ମୋହନଙ୍କ ନାରୀ ଦୁଇ ଶ୍ରେଣୀର । ପ୍ରଥମ ଶ୍ରେଣୀରେ ଅଛନ୍ତି, 'ଉତ୍ତାଳ ତରଙ୍ଗମୟୀ ସର୍ପକୁମ୍ଭୀର ସଙ୍କୁଳା ଚର୍ମଣ୍ୱତୀ' ଏବଂ ଅନ୍ୟ ଶ୍ରେଣୀରେ ଅଛନ୍ତି 'ଶାନ୍ତସଲିଳା କୂଳପ୍ଲାବିନୀ ଫଲ୍‌ଗୁ' । ଚମ୍ପା, ଚିତ୍ରକଳା, ସାଆନ୍ତାଣୀ, ଚାନ୍ଦମଣି, ଇନ୍ଦୁମତୀ ପ୍ରଭୃତି ଦୁଇ ଶ୍ରେଣୀର ନାରୀ ଚରିତ୍ର ସାହାଯ୍ୟରେ ସେ 'କୁ' ଏବଂ 'ସୁ'ର ଦ୍ୱନ୍ଦ ଅତ୍ୟନ୍ତ କଳାତ୍ମକ ଭାବରେ ଦେଖାଇଥିଲେ ହେଁ ଉଭୟ ଗୋଷ୍ଠୀରେ ସେମାନଙ୍କ ଜୀବନକାଳ ମଧ୍ୟରେ କୌଣସି ପ୍ରକାର ଚାରିତ୍ରିକ ପରିବର୍ତ୍ତନର କଳ୍ପନା କରିନାହାନ୍ତି । ଅର୍ଥାତ୍ ଯେ ଶିଷ୍ଟ ସେ ଆମୂଳ ଶିଷ୍ଟ ରହିଥିବାବେଳେ ଦୁଷ୍ଟ ଚରିତ୍ର ମଧ୍ୟ ସେହିଭଳି ଶେଷ ପର୍ଯ୍ୟନ୍ତ ଅପରିବର୍ତ୍ତନୀୟ ରହିଛନ୍ତି । ତେବେ

କୁନ୍ତଳା କୁମାରୀ ଅନୁଭବ କରିଛନ୍ତି, ମଣିଷ ମାତ୍ରକେ ହେଉଛି– 'ସୁ' ଏବଂ 'କୁ' ଉଭୟ ଗୁଣର ସମନ୍ୱୟ । ପରିସ୍ଥିତି, ପରିବେଶର ଚାପରେ ଏ ଉଭୟ ମଧ୍ୟରୁ ଗୋଟିଏ ପ୍ରବଳ ହୋଇ ଉଠେ । ତେବେ ପରିବର୍ତ୍ତିତ ଅବସ୍ଥାରେ ଏଥିର ପରିବର୍ତ୍ତନ ମଧ ଆସିପାରେ । ସୁପ୍ରବୃତ୍ତି ଦୁଷ୍ପ୍ରବୃତ୍ତିରେ ପରିବର୍ତ୍ତିତ ହେବାର ଦୃଷ୍ଟାନ୍ତ ସାଧାରଣତଃ ଦେଖା ଯାଉ ନ ଥିଲେ ମଧ ରତ୍ନାକର ବାଲ୍ମୀକିରେ ପରିଣତ ହେବାର ବହୁ ଉଦାହରଣ ସଂସାରରେ ରହିଛି । କୁନ୍ତଳା କୁମାରୀ ଏହି ତତ୍ତ୍ୱଟିକୁ ବିଶ୍ୱାସ କରୁଥିଲେ । ତେଣୁ ତାଙ୍କ ଉପନ୍ୟାସର ରତନୀ, ଗେଲୀ, ରମା, ତମାଳିନୀ, ଶୈବଳିନୀ ପ୍ରଭୃତି ନାରୀ ଚରିତ୍ରରେ ଔପନ୍ୟାସିକା ପରିବର୍ତ୍ତନର ସୂଚନା ଦେଇଛନ୍ତି । ସ୍ଥଳ ବିଶେଷରେ ଏଭଳି ମାନସିକ ପରିବର୍ତ୍ତନର ପୃଷ୍ଠଭୂମିକୁ ଜଣେ କୁଶଳୀ ମନସ୍ତତ୍ତ୍ୱବିତ୍ ରୂପରେ ବିଶ୍ଳେଷଣ ମଧ କରିଛନ୍ତି । ଏହା ହିଁ ଫକୀରମୋହନଙ୍କଠାରୁ ତାଙ୍କର ସ୍ୱାତନ୍ତ୍ର୍ୟକୁ ପ୍ରମାଣ କରୁଛି ।

କୁନ୍ତଳା କୁମାରୀଙ୍କର କଥା ସାହିତ୍ୟ ହେଉଛି ଏକ ଉଦ୍ଦେଶ୍ୟଧର୍ମୀ ସୃଷ୍ଟି । ନିଜର ସ୍ୱଳ୍ପ ଜୀବନକାଳ ମଧ୍ୟରେ ସେ ଓଡ଼ିଶାର ସାମାଜିକ ତଥା ରାଜନୈତିକ ସ୍ଥିତିର ଯେଉଁ ଦୁର୍ଦ୍ଦଶା ଦେଖିଥିଲେ, ତାହା ତାଙ୍କର ଜାତୀୟବାଦୀ ପ୍ରାଣକୁ ଗଭୀରଭାବରେ ଆଲୋଡ଼ିତ କରିଥିଲା । ନିସର୍ଗ କବିତ୍ୱର ଏକ ଆବେଗପୂର୍ଣ୍ଣ ହୃଦୟ ନେଇ ସେ ଏହି ଅବସ୍ଥାରୁ ତାଙ୍କର ପ୍ରିୟ ଉତ୍କଳର ମୁକ୍ତି ଚାହିଁଥିଲେ । ଏଠାର ଅଶିକ୍ଷା, ଦାରିଦ୍ର୍ୟ, କୁସଂସ୍କାର, ସଂକୀର୍ଣ୍ଣତା, ସ୍ୱାର୍ଥପରାୟଣତା, ପାରସ୍ପରିକ ସମ୍ପର୍କଗତ ହୀନତା, ଆଳସ୍ୟ ପରାୟଣତା, କର୍ମକୁଣ୍ଠା, ଉଚ୍ଚାକାଂକ୍ଷାର ଅଭାବ, ଅସ୍ପୃଶ୍ୟତା, ନାରୀ ନିର୍ଯ୍ୟାତନା, ରୋଗ, ଶୋକ, ବଢ଼ି ମରୁଡ଼ି ତାଙ୍କୁ ଆଜୀବନ ମ୍ରିୟମାନ କରି ରଖିଥିଲା । ନିଜ ଚିନ୍ତାରେ ସେ ଏହାର ପ୍ରତିକାର ମଧ ସ୍ଥିର କରିଥିଲେ । ତାଙ୍କର ଅଜସ୍ର ଚିଠିପତ୍ରରୁ ଏକ ବ୍ୟାକୁଳ ହୃଦୟର ବିକଳ ହାହାକାରର ସ୍ୱର ଏବେ ମଧ ଶୁଣିବାକୁ ମିଳିବ । ପରିବର୍ତ୍ତନ ନିମନ୍ତେ ପ୍ରଥମେ ଆବଶ୍ୟକ ଜନଚେତନାର । ଜନତାର ଆର୍ଥିକ ମେରୁଦଣ୍ଡ ଦୃଢ଼ ନ ହେଲେ, ଏ ସବୁ ସମ୍ଭବ ନୁହେଁ ଏବଂ ଏଥିପାଇଁ ପ୍ରୟୋଜନ ବାଣିଜ୍ୟ, ବ୍ୟବସାୟରେ ମନ ଦେଇ ନିଜର ଆର୍ଥିକ ଅବସ୍ଥାର ଉନ୍ନତି ସାଧନ । କୃଷିବ୍ୟବସ୍ଥାର ଉନ୍ନତି, ଗୋପାଳନ, ଫଳ ଉତ୍ପାଦନ, ପନିପରିବା ଉତ୍ପାଦନ ନିମନ୍ତେ ଉଦ୍ୟମ, ବୟନ ଶିଳ୍ପ ପ୍ରତି ଦୃଷ୍ଟି ଏହିଭଳି ବହୁ ଉପାୟ ଏଥି ନିମନ୍ତେ ପ୍ରୟୋଗ କରାଗଲେ ଏହା ସମ୍ଭବ ହେବ । ଆଳସ୍ୟ ତ୍ୟାଗ କରି, ପରନିନ୍ଦା ପର ଚର୍ଚ୍ଚାରୁ ବିରତ ରହି, କର୍ମଚଞ୍ଚଳତାର ସ୍ରୋତରେ ନିଜକୁ ଭସାଇ ଦେଲେ, ଓଡ଼ିଆମାନେ ନିଶ୍ଚୟ ବିଶ୍ୱର ଅନ୍ୟତମ ସମୃଦ୍ଧ ଜାତିରେ ପରିଣତ ହେବେ, ଏହାଥିଲା ତାଙ୍କର ସ୍ୱପ୍ନ । ଏଥିପାଇଁ ସେ ଯୁବଗୋଷ୍ଠୀର ସକ୍ରିୟତା କାମନା କରିଥିଲେ । ତାଙ୍କ ରଚିତ ପାଞ୍ଚଟି ଯାକ ଉପନ୍ୟାସରେ ଏହାର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳେ ।

ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନେଇ ସାହିତ୍ୟ ସୃଷ୍ଟି କଲେ, ତାହାଦ୍ୱାରା ସୃଷ୍ଟି କର୍ମ ପଦେ ପଦେ ନିୟନ୍ତ୍ରିତ ହେଉଥିବାରୁ ସର୍ଜନ ବୃତ୍ତି କୁଣ୍ଠିତ ହୋଇ ପଡ଼ି–ସୃଷ୍ଟି ପ୍ରଚାରଧର୍ମୀ ହୋଇଯାଏ ଏବଂ ଏହାର କଳାଗତ ଦିଗଟି ଦୁର୍ବଳ ହୋଇପଡ଼େ । କୁନ୍ତଳା କୁମାରୀଙ୍କ ସୃଷ୍ଟି ସମ୍ପର୍କରେ ଏହିଭଳି ଅଭିଯୋଗ ଶୁଣାଯାଏ । ଏହାକୁ ସ୍ୱୀକାର କରି ନେଇ କୁହାଯାଇପାରେ ଯେ, ଭ୍ରାନ୍ତି ଏବଂ ନଅତୁଣୀ ପ୍ରଭୃତି ତାଙ୍କର ପ୍ରାଥମିକ ସ୍ତରରେ ରଚିତ ଉପନ୍ୟାସଗୁଡ଼ିକର କଳାପକ୍ଷ କିଞ୍ଚିତ୍ ଦୁର୍ବଳ ହୋଇଥିଲେ ମଧ ପରଶମଣି, କାଳୀବୋହୂ ଏବଂ ଅନ୍ତତଃ ରଘୁଅରକ୍ଷିତ ସମ୍ପର୍କରେ ଏହା

କୁହାଯାଇପାରିବ ନାହିଁ । ଶିଳ୍ପ ଦୃଷ୍ଟିରୁ 'ରଘୁ ଅରକ୍ଷିତ' ଉପନ୍ୟାସର ସଫଳତା ଏବଂ ରସୋତ୍ତୀର୍ଣ୍ଣତା ଅବିସମ୍ବାଦିତ ।

ତାଙ୍କ ଉପନ୍ୟାସ ସମ୍ପର୍କରେ ସେ ସମୟର ନେତ୍ରୀ ସରଳାଦେବୀ କହିଛନ୍ତି– ମନେହୁଏ, ଲେଖିକା ଉପନ୍ୟାସର ମଧ୍ୟ ଦେଇ ତାଙ୍କର ରାଜନୈତିକ ବକ୍ତୃତା ଦେଉଛନ୍ତି ବା ନାରୀଶିକ୍ଷା, ସ୍ୱାସ୍ଥ୍ୟ, ନାରୀଙ୍କ କର୍ତ୍ତବ୍ୟ, ଦାମ୍ପତ୍ୟ ଜୀବନର ଆଦର୍ଶ କଥାମାନ କହୁଛନ୍ତି ।''ସେ ପୁଣି ଲେଖୁଛନ୍ତି, ''ଉତ୍କଳର ଅଶିକ୍ଷିତ ନାରୀ ସମାଜ ଉପରେ ତାଙ୍କ ଉପନ୍ୟାସମାନଙ୍କର ପ୍ରଭାବ ଏଡ଼ିବାର ସାଧ କାହାର ନାହିଁ । ଶିକ୍ଷିତ ନାରୀ ସମାଜ ଉପରେ ମଧ୍ୟ ତାଙ୍କ ପ୍ରବନ୍ଧ ଓ ଗଦ୍ୟର ପ୍ରଭାବ ପଡ଼ିଥିଲା ଏବଂ ଯେତେଦୂର ପର୍ଯ୍ୟନ୍ତ ଜନସାଧାରଣଙ୍କର ଆଧୁନିକ ଓ ସାମାଜିକ ବାତାବରଣର ପୂର୍ଣ୍ଣ ପରିବର୍ତ୍ତନ ନ ହୋଇଛି, ସେତେଦିନ ଯାକେ ତାଙ୍କ ଉପନ୍ୟାସର ପ୍ରଭାବ ମଧ୍ୟ ପଡ଼ିବ । କାରଣ 'ଉପନ୍ୟାସ ବା ଗଦ୍ୟ ସାହିତ୍ୟ' ସବୁଦେଶରେ ସବୁ ଜାତିରେ 'ବର୍ତ୍ତମାନ' ସମାଜର ମାନସିକତାକୁ ଲକ୍ଷିତ କରାଇଦିଏ । ପରସ୍ପର ବିରୋଧୀ ଏହି ମନ୍ତବ୍ୟର ଦ୍ୱିତୀୟାର୍ଦ୍ଧଟି ସମ୍ପୂର୍ଣ୍ଣ ସତ୍ୟ ହୋଇଥିବାବେଳେ ପ୍ରଥମାର୍ଦ୍ଧରେ ଆଲୋଚିକାଙ୍କର ସମ୍ବେଦନଶୀଳତାର ଘୋର ଅଭାବ ପରିଲକ୍ଷିତ ହୁଏ । ସେ କୁନ୍ତଳାକୁମାରୀଙ୍କର ଆବେଗପୂର୍ଣ୍ଣ କବି ହୃଦୟ ଏବଂ ଓଡ଼ିଶା ପାଇଁ କିଛି କରିବାର ବ୍ୟାକୁଳତାକୁ ଟିକିଏ ଛୁଇଁ ପାରିଥିଲେ ଏଭଳି ଲେଖି ନ ଥାନ୍ତେ । ତାଙ୍କ ଅନୁସାରେ ଏଠାର ଉଭୟ ଅଶିକ୍ଷିତ ଏବଂ ଶିକ୍ଷିତ ଗୋଷ୍ଠୀ ଯଦି କୁନ୍ତଳାଙ୍କ ଲେଖାଦ୍ୱାରା କିଛି ମାତ୍ରାରେ ପ୍ରଭାବିତ ହୋଇପାରିଥିଲେ, ତେବେ ଏହା ବକ୍ତୃତା ଧର୍ମୀ ହୋଇଥିଲେ କ୍ଷତି ଅବା କ'ଣ ? ସେ ସମୟର ସମାଜ ମାନସିକତାର ପରିସ୍ଫୁଟନରେ କୁନ୍ତଳାକୁମାରୀଙ୍କର ସୃଷ୍ଟି ଯଦି ସାମାନ୍ୟତମଭାବେ ସଫଳ ହୋଇଥାଏ, ତେବେ ଏହାର ଐତିହାସିକ ଗୁରୁତ୍ୱକୁ ଅସ୍ୱୀକାର କରାଯାଇପାରିବ କି ? ତାଙ୍କର ରଚନାରେ ଆମୂଳ ଜୀବନର ସଂଗୀତ ଗାନ କରାଯାଇ, କଳାପକ୍ଷ ଯଦି କିଞ୍ଚିତ ଉପେକ୍ଷିତ ହୋଇ ଯାଇଥାଏ, ତେବେ ସେଥିପାଇଁ ଆମେ ତାଙ୍କୁ ଆସାମୀର କାଠଗଡ଼ାରେ ଠିଆ କରାଇବା ଉଚିତ ହେବ କି ? କଳା ଅପେକ୍ଷା ଜୀବନ ଯେ ବହୁଗୁଣରେ ବଡ଼, ଅନ୍ତତଃ ଏତକ ସ୍ୱୀକାର କରିବାକୁ ଆମେ ବାଧ୍ୟ ।

କୁନ୍ତଳାଙ୍କର ନାରୀ ଚରିତ୍ର ବ୍ୟକ୍ତିତ୍ୱରେ, ବହୁ ଆୟାମରେ, କର୍ମ ପ୍ରବଣତାରେ ଏବଂ ଚାରିତ୍ରିକ ସୌରଭରେ ପୁରୁଷମାନଙ୍କୁ ବହୁ ପଛରେ ଛାଡ଼ି ଯାଇଛନ୍ତି । କାରଣ ତାଙ୍କ ସୃଷ୍ଟିରେ କୌଣସି ବ୍ୟକ୍ତିତ୍ୱଶାଳୀ ପୁରୁଷ ଚରିତ୍ର ପ୍ରାୟ ଦେଖିବାକୁ ମିଳନ୍ତି ନାହିଁ । 'ରଘୁ ଅରକ୍ଷିତ'ର ନାୟକ ନିଷ୍ଠୁର ନିୟତିର ହାତର ଖେଳଣା ଭଳି ଯେମିତି ଶିଉଳିଭଳି କେବଳ ଏ ଘାଟରୁ ସେ ଘାଟକୁ ଭାସି ବୁଲି ଜୀବନ କଟାଇ ଦେଇଛି, ସେଥିରେ ତାହାର କୌଣସି ପୌରୁଷ ଥିବାର ଜଣାଯାଏ ନାହିଁ । ସେହିଭଳି ଚରିତ୍ରହୀନ ଅନଙ୍ଗ, କୃପଣ ଏବଂ ଲୋଭୀ ଚନ୍ଦ୍ରଶେଖର, ଆନନ୍ଦ ସନ୍ଧାନୀ ବିଦ୍ୟାଧର, ଭଣ୍ଡ–ପଣ୍ଡିତ ଅଚ୍ୟୁତମିଶ୍ର ଏମାନଙ୍କ ମଧ୍ୟରୁ ଜଣେ କେହି ହେଲେ – ନିଜର ସ୍ୱତନ୍ତ୍ର ଅସ୍ତିତ୍ୱର ଛାପ ପାଠକମନରେ ସୃଷ୍ଟି କରିବା ନିମନ୍ତେ ସକ୍ଷମ ହୋଇ ନାହାନ୍ତି । ଏହାର କାରଣ ରହିଛି । ସ୍ରଷ୍ଟା ଚରିତ୍ର ଏବଂ ଘଟଣା ସଂଗ୍ରହ କରନ୍ତି, ସମାଜ ଗର୍ଭରୁ ଏବଂ ଏଥିପାଇଁ ଉପାଦାନ ସଂଗୃହୀତ ହୁଏ ଜନସମ୍ପର୍କରେ । ଏକ ଅପେକ୍ଷାକୃତ ମୁକ୍ତ ସମାଜରେ ଜନ୍ମଗ୍ରହଣ କରି

ସ୍ୱଚ୍ଛନ୍ଦ ଏବଂ ସ୍ୱାଧୀନ ଜୀବିକା ବରଣ କରି ନେଇଥିଲେ ହେଁ, କୁନ୍ତଳା ସ୍ୱେଚ୍ଛା ବିହାରିଣୀ ନ ଥିଲେ । ଡାକ୍ତରୀ କରିବା ପାଇଁ ସୁଦ୍ଧା ସେ ଏକାକୀ ବାହାରକୁ ଯାଉ ନ ଥିବା କଥା ସ୍ୱୀକାର କରିଛନ୍ତି । ତାଙ୍କର ଅନ୍ତରଙ୍ଗ ଯୋଗାଯୋଗ ସ୍ଥାପିତ ହୋଇଥିଲା, ଏ ଦେଶର ନାରୀ ସମାଜ ସହିତ । ସେମାନଙ୍କର ସୁଖ ଦୁଃଖ, ଆନନ୍ଦ ବିଷାଦ, ଅସହାୟତା ଏବଂ ଅନ୍ୟ ନିର୍ଭରତାକୁ ଖୁବ୍ ନିକଟରୁ ଦେଖିବାର ସୁଯୋଗ ତେଣୁ ସେ ବାରମ୍ବାର ପାଉଥିଲେ । ପୁରୁଷ କ୍ଷେତ୍ରରେ ଏହା ଥିଲା ନିତାନ୍ତ ସୀମାବଦ୍ଧ । ତେଣୁ ତାଙ୍କର ପୁରୁଷସୃଷ୍ଟି ପ୍ରକୃତରେ ଅପୂର୍ଣ୍ଣାଙ୍ଗ ।

ବ୍ୟକ୍ତିଗତ ଜୀବନରେ କୁନ୍ତଳା ଥିଲେ ସମ୍ପୂର୍ଣ୍ଣ ରୂପେ ଭାଗ୍ୟବାଦୀ । ତାଙ୍କର ସୃଷ୍ଟି ଏବଂ ଚକ୍ରଧର ମହାପାତ୍ରଙ୍କୁ ଲିଖିତ ପତ୍ରାବଳୀରୁ ତାଙ୍କୁ ଯେତିକି ଚିହ୍ନି ହୁଏ, ତହିଁରୁ ଅନ୍ତତଃ ଏହା ହିଁ ସିଦ୍ଧାନ୍ତ କରାଯାଇପାରେ । ପରିସ୍ଥିତି ଉପରୁ ନିୟନ୍ତ୍ରଣ ହୁଗୁଳା ହୋଇଗଲେ, ମଣିଷ ଈଶ୍ୱର ବିଶ୍ୱାସୀ ଏବଂ ତହିଁରୁ ଭାଗ୍ୟବାଦୀ ହୋଇଯାଏ । ଓଡ଼ିଆ ଜାତିର ଚରିତ୍ରରେ ଏହି ଗୁଣଟି ଦେଖିବାକୁ ମିଳିଥାଏ । କୁନ୍ତଳାଙ୍କର ଦେହରେ ଥିଲା ଓଡ଼ିଆର ରକ୍ତ । ଓଡ଼ିଶାରେ ଯେଉଁ ସ୍ୱଳ୍ପକାଳ କଟାଇଲେ, ଏଠାର ଜନଜୀବନରେ ଭାଗ୍ୟବାଦିତାର ଅଖଣ୍ଡ ପ୍ରତିପତ୍ତି ସେ ନିଶ୍ଚୟ ଲକ୍ଷ୍ୟ କରିଥିବେ । ତହିଁରୁ ତାଙ୍କ ନିଜର ଦର୍ଶନ ପ୍ରସ୍ତୁତ ହୋଇଥିଲା ଏବଂ ତାଙ୍କର ଚରିତ୍ରଗୁଡ଼ିକ ଭାଗ୍ୟବାଦୀ ହୋଇ ପଡ଼ିବାର କାରଣ ମଧ ଏହା ହିଁ ।

ଏ ରାଜ୍ୟର ବିରଳ ନାରୀ ଲେଖିକାମାନଙ୍କୁ ନେଇ ଉତ୍କଳ ଭାରତୀଙ୍କ ଗଳା ପାଇଁ ଯଦି ଗୋଟିଏ ହାର ଗୁନ୍ଥା ଯାଏ, ତେବେ କୁନ୍ତଳା ହିଁ ହେବେ ସେ ହାରର ପଦକତୁଲ୍ୟ– ଏହା ଆମର ବିନମ୍ର ମତ ।

କୌଣସି ଲେଖକ/ଲେଖିକାଙ୍କର ରଚନା ଶୈଳୀରେ ତତ୍ତ୍ୱ ଦୃଷ୍ଟିରୁ କିଛି ଦୋଷତ୍ରୁଟି ଦେଖାଇବା ବଡ଼ ସହଜ କଥା । ତେବେ ଏ ବିଷୟରେ କୌଣସି ଚୂଡ଼ାନ୍ତ ମତାମତ ଦେବା ପୂର୍ବରୁ ତାଙ୍କର ସାମାଜିକ ସ୍ଥିତି, ପରିବେଶ, ଶିକ୍ଷାଦୀକ୍ଷା, ଲୋକସମ୍ପର୍କ ଇତ୍ୟାଦି ବିଷୟରେ ଅନୁଧ୍ୟାନ କରିବା ଏକାନ୍ତ ଆବଶ୍ୟକ । ବହୁ ପରିବର୍ତ୍ତନ ଏବଂ ବିଚିତ୍ର ସ୍ଥିତି ମଧ ଦେଇ ଗଢ଼ି ହୋଇଯାଇଛି କୁନ୍ତଳାଙ୍କର ଜୀବନ ଇତିହାସ । ସଂକ୍ଷିପ୍ତ ଜୀବନ କାଳ ମଧରେ ତାଙ୍କୁ ଏକ ପରିପୂର୍ଣ୍ଣ ପାରିବାରିକ ଜୀବନର ଆନନ୍ଦ କଦାପି କେଉଁଠି ମିଳିନାହିଁ । ତାଙ୍କର ଜନ୍ମ ଓଡ଼ିଶା ବାହାରେ ସେକାଳର ମଧପ୍ରଦେଶର ବସ୍ତର ଜିଲ୍ଲାରେ । ବାଲ୍ୟ କାଳରେ ବର୍ମା ଯାତ୍ରା ଏବଂ ସେଠାରେ ଆଦ୍ୟ କୈଶୋର ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଅଣଓଡ଼ିଆ ପରିବେଶରେ ଏକ ଅଶାନ୍ତ ଜୀବନ ଯାପନ । ପରିବାରରେ ମାଉସୀଙ୍କୁ ନେଇ ପିତା ଏବଂ ମାତାଙ୍କ ମଧରେ ଯେଉଁ ବିବାଦ, ତା'ର ପ୍ରଭାବ ତାଙ୍କର ଶିଶୁ ମନରେ ବିପରୀତ ପ୍ରତିକ୍ରିୟା ସୃଷ୍ଟି କରିବା ସ୍ୱାଭାବିକ । ତହିଁରୁ ମୁକ୍ତି ପାଇବା ପାଇଁ ମାଆ ଯେତେବେଳେ ନିଜର ସନ୍ତାନମାନଙ୍କୁ ନେଇ ବର୍ମା ଛାଡ଼ି ଏକ ଅନିଶ୍ଚିତ ଭବିଷ୍ୟତକୁ ଆଗରେ ରଖି ଓଡ଼ିଶା ଫେରି ଆସନ୍ତି, ସେତେବେଳେ ମଧ ଆଶାର ସାମାନ୍ୟ ଆଲୋକ ରେଖାଟିକିଏ ଆଗରେ ଦେଖାଯାଉନାହିଁ । ତା'ପରେ ଖୋର୍ଦ୍ଧାର ବର୍ଷେ/ଦେଢ଼ବର୍ଷର ଜୀବନକାଳ ମଧରେ କେବଳ ସାମାଜିକ ଉପେକ୍ଷା, ଦାରିଦ୍ର୍ୟ ଏବଂ ଅଭାବବ୍ୟତୀତ ଆଉ କିଛି ଜୁଟିନାହିଁ । କଟକର ଛାତ୍ରୀ ଜୀବନ ସୁଦ୍ଧା ସେଇଥିରେ ବ୍ୟସ୍ତ, ବିବ୍ରତ ଏବଂ ସଦା ଉଚ୍ଚକିତ । ବୃତ୍ତି

ଜୀବନରେ ପ୍ରବେଶ କରିବା ପରେ ସେଇ ଦୁର୍ଭାଗ୍ୟ ତାଙ୍କର ପଛ ଛାଡ଼ି ନାହିଁ ଏବଂ ୧୯୩୮ରେ ତାଙ୍କର ମୃତ୍ୟୁପର୍ଯ୍ୟନ୍ତ ତାହାରି ସହିତ ତାଙ୍କୁ ରହିବାକୁ ପଡ଼ିଛି । ଭାଷା ଏବଂ ସାହିତ୍ୟ ସମ୍ପର୍କରେ ତାଙ୍କର ଯାହା ଧ୍ୟାନ କିମ୍ବା ଧାରଣା, ଅଧ୍ୟୟନ, ମନନ ଅବା ଚିନ୍ତନ- ସେସବୁ ୧୯୧୫ରେ ସେ କଟକ ଆସିବା ପରେ ହିଁ ସମ୍ଭବ ହୋଇଥିବ । ୧୯୧୩ରେ ସେ ଓଡ଼ିଶା ଆସିବା ପର୍ଯ୍ୟନ୍ତ ଓଡ଼ିଆଭାଷା ଜାଣି ନ ଥିଲେ । ଏହାପରେ ଭାଷା ଶିଖି ସେଥିରେ ସାହିତ୍ୟ ସୃଷ୍ଟି କରିବା କେବଳ ତାଙ୍କ ଭଳି ବିରଳ ପ୍ରତିଭା ପକ୍ଷରେ ହିଁ ସମ୍ଭବ, ଏହା ନ କହିଲେ ମଧ ଚଳିବ । ତାହାରି ଭିତରେ ନିଜର ମାତୃଭାଷା ଏବଂ ମାତୃଭୂମି (ଯାହା ପୁଣି ତାଙ୍କର ଜନ୍ମଭୂମି ନ ଥିବା) ପ୍ରତି ସେ ଯେଉଁ ମମତା ଦେଖାଇଛନ୍ତି ଏବଂ ତାହାରି ସେବାରେ ଜୀବନ ବିତାଇଦେବା ପାଇଁ ଶପଥ ଗ୍ରହଣ କରି କାର୍ଯ୍ୟ କରି ଯାଇଛନ୍ତି, ତାଙ୍କର ରଚନାଶୈଳୀ ସମ୍ପର୍କରେ ମତାମତ ଦେବା ପୂର୍ବରୁ ସେ ସବୁକୁ ବିଚାରକୁ ନେବାକୁ ହେବ । ଦେଶ ଆଉ ଜାତିର ଉନ୍ନତି ନିମନ୍ତେ ଦୃଢ଼ ବ୍ରତ ଗ୍ରହଣ କରି ଯିଏ, ଭାଷାକୁ ତହିଁର ମାଧ୍ୟମ ରୂପେ ମାତ୍ର ଗ୍ରହଣ କରି ନେଇଥିଲେ, ଶୈଳୀ ଦୃଷ୍ଟିରୁ ସେଥିରେ କ'ଣ ଦୁର୍ବଳତା ରହିଗଲା, ସେ ସବୁକୁ ବଡ଼ କରି ଧରିଲେ । ତାଙ୍କ ପ୍ରତି କଦାପି ସୁବିଚାର କରାଯାଇପାରିବ ନାହିଁ । ଉତ୍କଳ ଜନନୀଙ୍କର ବହୁ ସୁକୃତ ବଳରୁ ତାଙ୍କ ଭଳି ଏକ ବିରଳ ପ୍ରତିଭା ଏଠାରେ ବିକଶିତ ହୋଇଥିଲେ । ନ ଥାଉ ତାଙ୍କ ରଚନାରେ ଭାଷାର ଆଡ଼ମ୍ବର, ଘଟଣା ବିନ୍ୟାସର ଆନୁପାତିକତା କିମ୍ବା ଚରିତ୍ର ସୃଷ୍ଟିରେ ବହୁଦର୍ଶିତା-ତାଙ୍କଠାରୁ ଯେତିକି ମିଳିଛି, ତହିଁରେ ଉତ୍କଳ-ଜନନୀଙ୍କର ଶୂନ୍ୟ ଝୁଲି କ'ଣ ପୂର୍ଣ୍ଣ ହୋଇଯାଇ ନାହିଁ ? ଓଡ଼ିଶାର ଅଗଣିତ ପାଠକ/ପାଠିକାଙ୍କୁ ଅମୃତ ଉପଲବ୍ଧିର ବିରଳ ସୁଯୋଗ ଆଣି ଦେଇ ନାହିଁ ? ଆଉ କ'ଣ ଦରକାର ?

ଶେଷରେ 'ପ୍ରେମ ଚିନ୍ତାମଣି' ପ୍ରସଙ୍ଗରେ ଗୋଟିଏ କଥା କହି ଏହି ଆଲୋଚନା ଶେଷ କରାଯିବ । ଏ ବିଷୟରେ କାବ୍ୟଖଣ୍ଡର ମୁଖବନ୍ଧରେ ସୂଚନା ଦିଆଯାଇଛି । ଆଲୋଚକ କବି ଡଃ. କୁଞ୍ଜବିହାରୀ ଦାଶ ଏ ପ୍ରସଙ୍ଗରେ ଲେଖିଛନ୍ତି, 'ରାଧାକୃଷ୍ଣ, ଲଳିତା ବିଶାଖାଙ୍କୁ ଘେନି ରାସନାଟିକା ଲେଖିବା କଳ୍ପନା ସେ ଜୀବନରେ ସେ କରି ନ ଥିଲେ । କୌଣସି ଗୋଷ୍ଠୀଧର୍ମ ପ୍ରତି ଆକୃଷ୍ଟ ହେବାର ପ୍ରମାଣ ତାଙ୍କ ପତ୍ର, ପ୍ରବନ୍ଧ ଓ କବିତାରୁ ମିଳେ ନାହିଁ । ତେଣୁ ଜବରଦସ୍ତି ତାଙ୍କୁ କୌଣସି ଗୋଷ୍ଠୀ ଧର୍ମ ମଧ୍ୟରେ ଆବଦ୍ଧ କରିବା ଅନ୍ୟାୟ' । କିଛି ଖଣ୍ଡ କବିତା ଯାହାର ଆଧାର ହେଉଛି- ପ୍ରେମ, ତାକୁ ପୂର୍ବାପର ସଂଗତି ରଖି କାବ୍ୟାକାରରେ ସଜାଇବାରେ ଗୋଷ୍ଠୀ-ଧର୍ମରେ ଆବଦ୍ଧତା କିଭଳି ଆସିଲା, ତାହା ବୁଝିହୁଏ ନାହିଁ । ଏସବୁ କବିତାର ଲକ୍ଷ୍ୟ କ'ଣ ଥିଲା, ତାହା ସେକାଳରେ ଅଜ୍ଞାତ ଥିଲେ ମଧ ଆଜି ଆଉ କାହାର ଜାଣିବାକୁ ବାକି ନାହିଁ । ତାହା ଉପରେ ଆଧ୍ୟାତ୍ମିକତାର ଏକ ପୁଟ ଦେବା ପାଇଁ ଚକ୍ରଧର ମହାପାତ୍ର ଲେଖିକାଙ୍କର ସମର୍ଥନରେ ଏହାକୁ କାବ୍ୟ ରୂପ ଦେଇଥିଲେ । ତେଣୁ ଏହି କବିତାଗୁଡ଼ିକୁ ତା'ର ପୂର୍ବ ବିଚ୍ଛିନ୍ନ ରୂପ ଫେରାଇ ଦେବା ଦ୍ୱାରା ମୃତ୍ୟୁ ପରେ କୁନ୍ତଳାଙ୍କ ଆନ୍ତରିକ କାମନା କିଭଳି ଚରିତାର୍ଥ ହେଲା ? କିମ୍ବା ନାଟକାକାରରେ ଏହାର ସଜ୍ଜୀକରଣ ଦ୍ୱାରା କାବ୍ୟର ଯୁଗୋପଯୋଗିତା କିଭଳି ବ୍ୟାହତ ହୋଇଥିଲା ? ଏଥିପାଇଁ ଡଃ. ଦାଶ ସରଳାଦେବୀଙ୍କର ମନ୍ତବ୍ୟ ଉଦ୍ଧାର କରିଛନ୍ତି । ସରଳାଦେବୀଙ୍କ ମତରେ, "ସେ ଯେଉଁଠି ନାୟିକା ଭାବରେ ତାଙ୍କର କବିଦୟିତକୁ ନିଜର ପ୍ରଣୟ ଲୀଳାର ସର୍ବେତିହାସ ନିବେଦନ

କରିଛନ୍ତି ଏବଂ ମାନସ ନାୟକଙ୍କ ପ୍ରଣୟ ଭାବକୁ ନିଜର ଭାଷା ତୂଳିକାରେ ବିଚିତ୍ରବର୍ଣ୍ଣ ବିନ୍ୟାସ ଦେଇଛନ୍ତି, ସେଇ କଥା ସେ ଅତ୍ୟନ୍ତ ଅସାଧାରଣ ସାହସିକତା ସହକାରେ ବ୍ୟକ୍ତ କରିଛନ୍ତି ବୋଲି ସୁଧୀ ନରନାରୀ ତାଙ୍କୁ ଚିରଦିନ ସମ୍ମାନ କରିବେ ।'' ରକ୍ତମାଂସର କ୍ଷୁଧାତୃଷାର ବେଦନାକୁ ତାଙ୍କ ଲେଖନୀ ଆମ ଆଗରେ ସୁସ୍ପଷ୍ଟ, ସୁସଞ୍ଚ କରି ଧରିଛି । ସରଳାଦେବୀ 'ପ୍ରେମଚିନ୍ତାମଣି'ର ମୁଖବନ୍ଧର ପ୍ରାଜ୍ଞ ଲେଖକ ଡଃ. ଆର୍ତ୍ତବଲ୍ଲଭ ମହାନ୍ତିଙ୍କୁ ମଧ୍ୟ ଏଥିପାଇଁ ନିନ୍ଦା କରିବାକୁ ପଛାଇ ନାହାନ୍ତି । ଏସବୁ ମନ୍ତବ୍ୟ ଏତେ ବ୍ୟକ୍ତିଗତ ଯେ, ଏହାକୁ ଗ୍ରହଣ କରି ନେବାର କୌଣସି କାରଣ ଆମେ ଦେଖୁ ନାହୁଁ । କୁନ୍ତଳାଙ୍କ ଖଣ୍ଡ-କବିତା ପଛରେ ମହା ଭାବମୟ ଶ୍ରୀକୃଷ୍ଣ କିମ୍ବା ପରମ ପ୍ରେମମୟୀ ରାଧିକା ନ ଥାଇ ରକ୍ତମାଂସଧାରୀ ସାଧାରଣ ମଣିଷ ହିଁ ଥିଲେ । ତେବେ ତାକୁ କାବ୍ୟ ରୂପ ଦେବା ପାଇଁ ଯାହା କରାଯାଇଥିଲା, ତାହା ଲେଖିକାଙ୍କର ଜୀବଦ୍ଦଶାରେ ତାଙ୍କର ସମର୍ଥନରେ ହିଁ କରାଯାଇଥିଲା । ପୁସ୍ତକାକାରରେ ପ୍ରେମ ଚିନ୍ତାମଣି ପ୍ରକାଶିତ ହେବା ପରେ କୁନ୍ତଳା ଦୀର୍ଘକାଳ ବଂଚିଥିଲେ ମଧ୍ୟ ସେ କେଉଁଠି ଏହାର ପ୍ରତିବାଦ କିମ୍ବା ଏଥିପାଇଁ କୌଣସି ଅସନ୍ତୋଷ ବ୍ୟକ୍ତ କରି ନାହାନ୍ତି । ତେଣୁ କାବ୍ୟକୁ ତାହାର ପୂର୍ବରୂପ ଫେରାଇ ଦେବାରେ ହୁଏତ କିଛି ମାନସିକ ସନ୍ତୋଷ ମିଳିଥିବାର ଦାବୀ କରାଯାଇପାରେ । ତେବେ ଏହାଦ୍ୱାରା ଏକ ସୁପ୍ରସ୍ତୁତ କାବ୍ୟ ପଠନର ଆନନ୍ଦରୁ ସାମ୍ପ୍ରତିକ ଓଡ଼ିଆପାଠକଙ୍କୁ ବଂଚିତ କରାଯିବ ବୋଲି ଆମର ବିନମ୍ର ମତ । ତେଣୁ ଏହି ଖଣ୍ଡରେ 'ପ୍ରେମଚିନ୍ତାମଣି'କୁ ତାହାର ପୂର୍ବ ପ୍ରକାଶିତ ଦୃଶ୍ୟ-କାବ୍ୟ ରୂପରେ ହିଁ ପ୍ରକାଶ କରାଗଲା ।

ଗ୍ରନ୍ଥାବଳୀ ରୂପରେ କୁନ୍ତଳା କୁମାରୀ ରଚନା ବଳୀ ଥରେ ମାତ୍ର ପ୍ରକାଶିତ ହୋଇ ଅନେକ ଦିନରୁ ନିଃଶେଷିତ ହୋଇଥିଲା । ଏହାର ପୁନଃ ପ୍ରକାଶନର ଉଦ୍ୟମ ହେବାରୁ ମନୋଜ ପ୍ରକାଶନର ସ୍ୱତ୍ତ୍ୱାଧୀକାରୀ ଶ୍ରୀମାନ ମନୋଜ କୁମାର ପଣ୍ଡା ଏହି ଦାୟିତ୍ୱ ବହନ କରି ମୋତେ କୃତଜ୍ଞତା ପାଶରେ ଆବଦ୍ଧ କରିଛନ୍ତି । ଏହି ଅବସରରେ ମୁଁ ତେଣୁ ଶ୍ରୀମାନ ମନୋଜ କୁମାରଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଅଛି । ଏହାର ଗଦ୍ୟଖଣ୍ଡ ସଂଗ୍ରହ କରିଛନ୍ତି ମୋର ଅନୁଜ ଶ୍ରୀଯୁକ୍ତ ଜୟନ୍ତ କୁମାର ସୁଦୂର ଦିଲ୍ଲୀରୁ । ଗ୍ରନ୍ଥାବଳୀର ମୁଦ୍ରିତ ରୂପ ଦେଖି ସେ ନିଶ୍ଚୟ ଯତ୍ପରୋନାସ୍ତି ଆନନ୍ଦ ଲାଭ କରିବେ । ଗ୍ରନ୍ଥାବଳୀର ଗୁଣାଗୁଣ ବିଚାରର ଦାୟିତ୍ୱ ବର୍ତ୍ତମାନ ଓଡ଼ିଆ ପାଠକ/ ପାଠିକାଙ୍କ ହସ୍ତରେ ଅର୍ପିତ ହେଲା ।

*ହେମନ୍ତ କୁମାର ଦାସ*

## ଗ୍ରନ୍ଥ ସୂଚୀ

# ଭ୍ରାନ୍ତି

## (୧)

କକ୍ଷଟି ପ୍ରଶସ୍ତ । ହିନ୍ଦୁ ଗୃହର ରୁଚି ଅନୁଯାୟୀ ସୁସଜ୍ଜିତ । ଗୃହ କାନ୍ଥରେ ଦେବଦେବୀଙ୍କର ବୃହଦାୟତନ ସୁନ୍ଦର ଆଲେଖ୍ୟମାଳା । ଆଲେଖ୍ୟର ବିଶେଷ ପରିଚୟ ନିଷ୍ପ୍ରୟୋଜନ । କେବଳ ଗୋଟିକର ପରିଚୟ ଦେବି । ଶ୍ରୀକୃଷ୍ଣ କଦମ୍ବମୂଳରେ, ମନୋହର ନୀଳରଙ୍ଗର ଏକ ବିଚିତ୍ର ଲାବଣ୍ୟମୟ ମୂର୍ତ୍ତି, ହାତରେ ବଂଶୀ, କଣ୍ଠରେ ବନମାଳା, କଟିରେ ପୀତବସନ, ମସ୍ତକରେ ମୟୂରଚନ୍ଦ୍ରିକା, ପଶ୍ଚାଦ୍ଦିଗରେ ଭୁଜ-ବନ୍ଧନକୃତା ରାଧାମୂର୍ତ୍ତି, ଆସନ ପଦ୍ମୋପରି, ଯମୁନାର ନୀଳତରଙ୍ଗ, ଶୁଭ୍ର ହଂସ ଭାସି ଭାସି କାଳିନ୍ଦୀରେ କ୍ରୀଡ଼ାନିରତ ।

ଏ ତ ଗଲା କାନ୍ଥର ଛବି । ଛବିକୁ ଏକ ଧ୍ୟାନରେ ଅନାଇ କକ୍ଷତଳେ ଉପବିଷ୍ଟା ଜଣେ ସୁକୁମାରୀ ବାଳିକା । ଚିକ୍କଣ ସୁପାତି, ରୌପ୍ୟକରଙ୍କରେ ସଜ୍ଜିତ ତାମ୍ବୂଳ । ବାଳିକାର ଅବୟବ, ଆକୃତି ଓ ବେଶଭୂଷା ଉଚ୍ଚବଂଶୀୟା କରଣ ବାଳିକା ତୁଲ୍ୟ । ମୁଖ ଅତି ସୁନ୍ଦର, ଅତି କୋମଳ, ବୟସ ଅନୁମାନ ଦଶବର୍ଷ, ମାତ୍ର ଏଡ଼େ କ୍ଷୁଦ୍ର ବାଳିକା ଯେ କେଡ଼େ ସୁନ୍ଦରୀ, ତାହା ଲେଖନୀ ଦ୍ୱାରା ବର୍ଣ୍ଣନା କରିବା ଅସମ୍ଭବ । ସେ ସୁନ୍ଦରୀ, କାନ୍ଥରେ ଥିବା ଯମୁନା ଜଳହିଲ୍ଲୋଳରେ ଭାସମାନ ପ୍ରଫୁଲ୍ଲ ପଦ୍ମତୁଲ୍ୟ ସୁନ୍ଦରୀ ।

ନୋହିଲେ ଆଉ କାହା ପରି ? ସେ ସୁନ୍ଦରୀ, କାଳିନ୍ଦୀର ପ୍ରବାହିତ ନୀଳ କଲ୍ଲୋଳରାଶି ତୁଲ୍ୟ ତାହାର କଲ୍ଲୋଳିତ କେଶରାଶି ପୃଷ୍ଠଦେଶରେ ବାତ୍ୟାନ୍ଦୋଳିତ । ବାଳିକା ସୁନ୍ଦରୀ - କାରଣ ତାହାର ଉପବେଶନ ଦ୍ୱାରା ସୁପାତି ଉଜ୍ଜ୍ୱଳ, କକ୍ଷଟି ପ୍ରଫୁଲ୍ଲ । କାନ୍ଥଗୁଡ଼ିକର ଚିତ୍ରମାଳା ଆଉ ବାଳିକାର ଜୀବନ୍ତ ଚିତ୍ର ଉଭୟ ମଧ୍ୟରେ ବାଳିକା ହିଁ ଶ୍ରେଷ୍ଠ । ବାଳିକା ସୁନ୍ଦରୀ, କବିବର୍ଣ୍ଣନୀୟା, ଉପନ୍ୟାସକଳ୍ପିତା ନାୟିକା, ତାହା ନୁହେଁ - ମାତ୍ର ସେ ସୁନ୍ଦରୀ, କାରଣ ତାହାର କୋମଳ

ଅବୟବର ପ୍ରତ୍ୟେକ ଅଂଶରେ ଏକ ଅପୂର୍ବ ମାଧୁରୀ ସ୍ରୋତ ପ୍ରବାହିତ । ତାହାର ଚକ୍ଷୁ, ତାହାର ନାସିକା, ତାହାର ଲଲାଟ, ତାହାର ଚିବୁକ, ମୁକ୍ତା ସଦୃଶ ଦନ୍ତପଂକ୍ତି ସବୁ ସୁନ୍ଦର, ଅତି ସୁନ୍ଦର । ଫୁଲଟି ଫୁଟି ପତ୍ରଟିକୁ ଉଜ୍ଜ୍ୱଳ କଲା ପରି ବାଳିକାଟି ବସି ଗୃହଟିକୁ ଉଜ୍ଜ୍ୱଳ କରିଅଛି ।

ସୁପାତିର ଅନ୍ୟପାର୍ଶ୍ୱରେ ଆଉ ଜଣେ ଯୁବତୀ ଶାୟିତା । ସେ ମଧ ସୁନ୍ଦରୀ । ମାତ୍ର ତାହାର ପୂର୍ଣ୍ଣ ଯୌବନ କୋମଳ ବାଳିକାର ଅଙ୍ଗସୌଷ୍ଠବ ଓ ସୌନ୍ଦର୍ଯ୍ୟ ତୁଳନାରେ କିଛି ନୁହେଁ । ଦର୍ଶକ ସହସା ଉଭୟର ତାରତମ୍ୟ ବୁଝିପାରିବେ । ବାଳିକା ସୁନ୍ଦରୀ, ଏକ ଅପୂର୍ବ ଅକପଟ ମଧୁରତା, ଅତୁଳନୀୟ ସରଳତା ତାହାର ପ୍ରତ୍ୟେକ ଅଙ୍ଗରେ ପ୍ରଦୀପ୍ତ, ତାହାର ବିଶାଳ ନେତ୍ରଦ୍ୱୟରେ ଶାରଦାକାଶର ବିମଳ ତରଳ ଜ୍ୟୋତ୍ସ୍ନା ଢଳଢଳ ଛଳଛଳ ! ଆଉ ଯୁବତୀ–ତାହାର ନୟନ କୋଣରେ କୁଟିଳ କଟାକ୍ଷ, ସୁନ୍ଦର ଅଧର ପ୍ରାନ୍ତରେ ଅସରଳ ହାସ୍ୟ । ଉଭୟେ ସୁନ୍ଦରୀ – ଜଣେ ଗ୍ରୀଷ୍ମାବସାନର ସୁବାସିତ, ଚିକ୍କଣ, ଶୁଭ୍ରମଲ୍ଲିକା, ଆଉ ଜଣେ ଗର୍ବିତା ସୂର୍ଯ୍ୟମୁଖୀ । ଜଣେ ଶରତ ପ୍ରଭାତର ଝରା ଶେଫାଳୀ, ଆଉ ଜଣେ ପ୍ରାବୃଟ ପ୍ରାତଃକାଳୀନ ଫୁଟନ୍ତା ରଙ୍ଗ ଟହ ଟହ ହରଗୌରା, ଉଭୟ କୁସୁମ, ଜଣେ ନାମ ଅନୁରୂପା ଶେଫାଳୀ, ଅନ୍ୟଟି ତଦ୍‌ବିପରୀତା ମାଳତୀ । ଶେଫାଳୀ ସୁନ୍ଦରୀ, ସରଳା, ମଧୁରତାମୟୀ ବାଳିକା । ମାଳତୀ ସୁନ୍ଦରୀ, ଧୂର୍ତ୍ତା, ଚତୁରା, ମଦୋନ୍ମତ୍ତା ଯୁବତୀ ।

ଶେଫାଳୀ ଜମିଦାର ଦୁହିତା "ରାଣୀ ଶେଫାଳିକା", ଉଆସର ଜେମାମଣି । ମାଳତୀ ଜମିଦାରଙ୍କ କର୍ମଚାରୀର ଧୂର୍ତ୍ତା ଦୁହିତା—ଶେଫାଳୀର ସଙ୍ଗିନୀ, ତୋଷାମୋଦକାରିଣୀ, ବିଚକ୍ଷଣା ଓ କୂଟବୁଦ୍ଧିସମ୍ପନ୍ନା ।

ପ୍ରଭୁକନ୍ୟା ନିକଟରେ ଉପବେଶନ ପୂର୍ବକ ମାଳତୀ ଗଳ୍ପର ପସରା ମେଲି ଦେଇଅଛି । ଦିବା ଏକଘଟିକା ଉତ୍ତୀର୍ଣ୍ଣ, ଶେଫାଳୀର ଅଳ୍ପ ଅଳ୍ପ ତନ୍ଦ୍ରା ବୋଧ ହେଉଅଛି, ମାଳତୀ ତାହା ଲକ୍ଷ୍ୟ ନକରି ଗଳ୍ପରେ ବ୍ୟାପୃତ । ହଠାତ୍ ଗୋଟିଏ ଶବ୍ଦ ଶୁଣି ସେମାନେ ଚମକି ପଡ଼ିଲେ ।

"ଏ କଣ ଅନୁବାବୁ !", ଏହା କହି ବିସ୍ମୟରେ ହତବୁଦ୍ଧି ମାଳତୀ ଧଡ଼୍ କରି ଉଠିବସିଲା । ଶେଫାଳୀର ବାକ୍ୟସ୍ଫୂର୍ତ୍ତି ହେଲା ନାହିଁ । ତାହାର ସର୍ବାଙ୍ଗ ଥରିଲା । ଅନୁ ପଡ଼ି ଯାଇଅଛି, ମୁଣ୍ଡରେ ଆଘାତ ଲାଗି ରକ୍ତ ଝର ଝର ବହି ଯାଉଅଛି, ସମସ୍ତ ବସ୍ତ୍ର ରକ୍ତରେ ଆର୍ଦ୍ର, ତାହାର ଚିତ୍କାରରେ କ୍ଷଣକ ମଧ୍ୟରେ ଗୃହର ପୂଝାରୀ, ବେହେରା, ଭଣ୍ଡାରୀ, ଦାସୀ ରୁଣ୍ଡ ହୋଇଗଲେ । କିଏ ପାଣି ଢାଳିଲା, କିଏ ପଟି ବାନ୍ଧିଲା, କିଏ ଡାକ୍ତର ଡାକିବାକୁ ଗଲା, କିଏ କେବଳ ପାଟି କଲା । ଅନୁ ଅଚେତନ ।

ଡାକ୍ତର ଦିଗମ୍ବର ଚୌଧୁରୀ କ୍ଷତ ସ୍ଥାନ ପରୀକ୍ଷା କରି ଆଘାତ ଗୁରୁତର ନଥିବା ପ୍ରକାଶ କଲେ । ହରିହରଙ୍କ ପରିବାର ଆଶ୍ୱସ୍ତ ହେଲେ । ଶେଫାଳୀର କମ୍ପିତ ବକ୍ଷ ସ୍ଥିର ହେଲା । ମାଳତୀର ବାଷ୍ପାକୁଳିତ ନେତ୍ରବାରି ପ୍ରଶମିତ ହେଲା ।

ଅନୁ ଶଯ୍ୟାଶାୟି । ପାର୍ଶ୍ୱରେ ମୂର୍ତ୍ତିମତୀ କରୁଣାରୂପିଣୀ ଶେଫାଳିକା, କ୍ଷୁଦ୍ର ଭଗିନୀତୁଲ୍ୟା ମମତାମୟୀ, ମାତୃତୁଲ୍ୟା ଯତ୍ନବତୀ । ଶେଫାଳୀର ପ୍ରାଣ ଅନୁଠାରେ, ଧ୍ୟାନ ଅନୁଠାରେ, ଅନୁ

ତାହାର ଭ୍ରାତାଠାରୁ ଅଧିକ ପ୍ରିୟ, ଆବାଲ୍ୟସଙ୍ଗୀ, କ୍ରୀଡ଼ା ସହଚର, ସୁଖ ଦୁଃଖ, ଭ୍ରମଣ, ପଠନ ସବୁର ସହଭାଗୀ । ଅନୁ ତାହାର ଅନୁଜ । ଶେଫାଳୀର ସ୍ନାନ ଭୋଜନରେ ତୃପ୍ତି ନାହିଁ, ଖେଳ କୌତୁକରେ ମନ ନାହିଁ । କେବଳ ଅବିଶ୍ରାନ୍ତି ଭାବରେ ଦିବସ ରଜନୀ ଅନୁ ନିକଟରେ ଅତିବାହିତ କରେ । ଅନୁ ବାଳକ, ତ୍ରୟୋଦଶବର୍ଷୀୟ ସୁକୁମାର ବାଳକ । ହରିହରବାବୁଙ୍କର ପାଳିତ ।

ହରିହର ଛୋଟରାୟ ସ୍ଥାନୀୟ ଜମିଦାର, ଅତୁଳ ଐଶ୍ୱର୍ଯ୍ୟଶାଳୀ ଏବଂ ସଦାଶୟ; କିନ୍ତୁ ମା' କମଳାଙ୍କର ବରପୁତ୍ର ହରିହର, ଷଷ୍ଠୀ ଦେବୀଙ୍କ କୃପାରୁ ବଞ୍ଚିତ ତାଙ୍କର ପତ୍ନୀ ଇନ୍ଦୁମୁଖୀ ଅତୁଳନୀୟ ରୂପ ଅପାର ଐଶ୍ୱର୍ଯ୍ୟର ଅଧିକାରିଣୀ ହୋଇ ସୁଦ୍ଧା, ନିଜକୁ ଅତ୍ୟନ୍ତ ଅଭାଗିନୀ ଜ୍ଞାନ କରି ବଡ଼ ଦୁଃଖରେ କାଳ କାଟୁଥିଲେ । ବିବାହର ଦଶବର୍ଷ ଅତୀତ ହେଲା । ବହୁତ ବ୍ରତ ନିୟମ ପୂଜା ଉପବାସାଦି ପାଳନ କଲେ; ମାତ୍ର ସନ୍ତାନ ଆକାଂକ୍ଷା ଫଳବତୀ ହେଲା ନାହିଁ । ତହୁଁ ତୀର୍ଥାଦି ପର୍ଯ୍ୟଟନ କଲେ । ତଦ୍ୱାରା ମଧ୍ୟ କିଛି ଲାଭ ହେଲା ନାହିଁ । ଏହି ସମୟରେ କଟକ ଜିଲ୍ଲାରୁ ଘନଶ୍ୟାମ ମହାନ୍ତି ନାମକ ଜଣେ ପରମ ଧାର୍ମିକ ବ୍ୟକ୍ତି ଗୃହ ବିବାଦରେ ନିତାନ୍ତ ନିଃସ୍ୱ ଅବସ୍ଥା ପ୍ରାପ୍ତ ହୋଇ ହରିହର ଛୋଟରାୟଙ୍କ ଜମିଦାରୀରେ ଆଶ୍ରୟ ଗ୍ରହଣ କଲେ । ତଦୀୟ ପତ୍ନୀ ସୁଶୀଳା ଦେଈ ଏକମାତ୍ର ସନ୍ତାନ ଅନଙ୍ଗମୋହନର ଜନ୍ମ ପରେ ମାନବଲୀଳା ସମ୍ବରଣ କରିଥିଲେ । ଦୁଇ ବର୍ଷର ସୁକୁମାର ଶିଶୁକୁ ଘେନି ପିତା ଘନଶ୍ୟାମ ଜମିଦାର ଦେବାନ କାର୍ଯ୍ୟ କରିବାକୁ ଲାଗିଲେ । ମାତୃହୀନ ଅନୁକୁ ପାଇ ଇନ୍ଦୁମୁଖୀଙ୍କର ଆଉ ଆହ୍ଲାଦର ସୀମା ରହିଲା ନାହିଁ । ଦିବାରାତ୍ର ଅନୁ ତାଙ୍କ ନିକଟରେ ଥାଏ । ତାହାର ସମସ୍ତ ସେବା ସ୍ୱହସ୍ତରେ କରି ସୁଦ୍ଧା ଇନ୍ଦୁମୁଖୀଙ୍କର ତୃପ୍ତି ହୁଏ ନାହିଁ ।

ଈଶ୍ୱରେଚ୍ଛାରେ ଏହି ସମୟରେ ତାଙ୍କର ଚିରଦିନର ଦୁଃଖ ଅବସାନ ହୋଇ ଗୋଟିଏ ସନ୍ତାନ ଜନ୍ମଗ୍ରହଣ କଲା । ଗୃହ ଆଲୋକିତ କରି ଆଶ୍ୱିନ ପ୍ରାତଃକାଳର ମଧୁର ସୂର୍ଯ୍ୟୋଦୟ ସମୟରେ ଉଷାରୂପିଣୀ ଏକ ପରମାସୁନ୍ଦରୀ କନ୍ୟା ହରିହରଙ୍କ ନିରାନନ୍ଦ ଗୃହ-ମରୁରେ ଫୁଟି ଉଠିଲା । ସେତେବେଳେ ଦଶହରା ପୂଜାର ଗୋଳମାଳ, ବୃହତ୍ ଜମିଦାର ପ୍ରାସାଦ ପରିପୂର୍ଣ୍ଣ । ମା'ଅନ୍ନପୂର୍ଣ୍ଣାଙ୍କ ଆଗମନ ସଙ୍ଗେ ସଙ୍ଗେ ସେହି ମା' ମୂର୍ତ୍ତିମତୀ ସ୍ନେହପ୍ରତିମା, ସଦୃଶ କନ୍ୟାରୂପରେ ଆଗମନ କରି ଇନ୍ଦୁମୁଖୀଙ୍କ କ୍ରୋଡ଼ାସନ ଉଜ୍ଜ୍ୱଳ କଲେ । ଆନନ୍ଦ ରୋଳରେ ବିଶାଳ ପ୍ରାଙ୍ଗଣ ପୂରି ଉଠିଲା । ଆତ୍ମୀୟା ପ୍ରତିବେଶିନୀ ସମସ୍ତେ କନ୍ୟାକୁ ଦେଖିବାକୁ ଧାଇଁ ଆସିଲେ । ବୃଦ୍ଧ ପିତାମହ ସାକ୍ଷାଦ୍ ଅନ୍ନପୂର୍ଣ୍ଣା ମୂର୍ତ୍ତି ଭାବି ଭକ୍ତିବିହ୍ୱଳ ହୋଇ ନୟନରୁ ଆନନ୍ଦାଶ୍ରୁ ବୁହାଇଲେ ।

ପ୍ରଭାତର ଫୁଲ, ଶରତର ଫୁଲ, ପୂଜାର ଫୁଲ, ମା'ର କଣ୍ଠମାଳା;- ନାମ ଦିଆଗଲା ଶେଫାଳିକା । ହରିହରଙ୍କ ଇଚ୍ଛାକ୍ରମେ ନାମ ଦିଆଗଲା ଶେଫାଳିକା । ଶେଫାଳୀକୁ ଜଗଦମ୍ବାଙ୍କର ଅମଳକମଳ ଚରଣତଳେ ଉତ୍ସର୍ଗ କରି ବୃଦ୍ଧ ଦୀନବନ୍ଧୁ ଓ ତଦୀୟ ପୁତ୍ର ହରିହର କୃତକୃତ୍ୟ ହେଲେ । ଇନ୍ଦୁମୁଖୀର ଲଜ୍ଜା କଳଙ୍କ ଦୂରୀଭୂତ ହେଲା । ମାତୃତ୍ୱର ଆକାଂକ୍ଷା ପୂର୍ଣ୍ଣ ହେଲା ।

ଶାରଦୀୟା ଶଶିକଳା ଶେଫାଳୀ ଦିନକୁ ଦିନ ବୃଦ୍ଧି ପ୍ରାପ୍ତ ହେଲା । ତାହାର ଅନ୍ନପ୍ରାଶନ ଦିନ ଭକ୍ତ ଦୀନବନ୍ଧୁ ସର୍ବସମ୍ମତିକ୍ରମେ ଶିଶୁ କନ୍ୟାଟିର ସୁକୋମଳ ହସ୍ତ ଅନୁର ସୁକୁମାର ହସ୍ତରେ ଧରାଇ ଦେଲେ । ଜୟଢକ୍କା ବାଜି ଉଠିଲା ।

ପିଲାଖେଳ ପରି ଅଭିନବ ବିବାହ ହୋଇଗଲା । ହରିହର ଓ ଇନ୍ଦୁମୁଖୀଙ୍କର ଆନନ୍ଦ ପୂର୍ଣ୍ଣ ହେଲା । ଘନଶ୍ୟାମଙ୍କ ଆଶା ସଫଳ ହେଲା । ସେହିଦିନୁ ଗୋଟିଏ ବୃନ୍ତରେ ଯୋଡ଼ିଏ ଫୁଲ ପରି ଅନୁ ଓ ଶେଫାଳୀ ବଢ଼ିବାକୁ ଲାଗିଲେ । ଶିଶୁଦ୍ୱୟର କଳହାସ୍ୟ ଧ୍ୱନିରେ ବୃହତ୍ ପ୍ରାଙ୍ଗଣ ମୁଖରିତ ହେଲା । ଏତେ ସୁଖ ! ଇନ୍ଦୁ ଏତେ ସୁଖର କଥା କଳ୍ପନା କରିନଥିଲେ । ବାଳକ ବାଳିକାଙ୍କୁ ଅନାଇ ତାଙ୍କ ହୃଦୟ ଉଛୁଳି ଉଠେ । ଉଭୟେ ତାହାର, ଏ କ୍ଷୁଦ୍ର ଦମ୍ପତି ତାହାର ସର୍ବଶ୍ରେଷ୍ଠ ସମ୍ପତ୍ତି, ଅମୂଲ୍ୟଧନ । ଉଭୟେ ଖେଳୁ ଖେଳୁ ମାତାଙ୍କ କୋଳକୁ ଡେଇଁ ପଡ଼ନ୍ତି । ଅଙ୍କାସନ ସକାଶେ ବିବାଦ କରନ୍ତି; କାରଣ ଇନ୍ଦୁ ଉଭୟଙ୍କର ମାତା ।

ଶେଫାଳୀର ଜନ୍ମର ତିନିବର୍ଷ ପରେ ହଠାତ୍ ବିସୂଚିକାରେ ଘନଶ୍ୟାମ ବାବୁଙ୍କର ମୃତ୍ୟୁ ହେଲା । ଉପଯୁକ୍ତ ଦେବାନଙ୍କୁ ହରାଇ ସମସ୍ତ ପ୍ରଜା ହାହାକାର କରିବାକୁ ଲାଗିଲେ । ଅନୁ ପିତୃହୀନ ହେଲା ।

ବର୍ତ୍ତମାନ ଶେଫାଳୀର ବୟସ ଦଶବର୍ଷ । ଅନୁର ବୟସ ତେର । ଅନୁ ସ୍ଥାନୀୟ ସ୍କୁଲର ଶେଷ ଶ୍ରେଣୀରେ ପଢ଼େ । ତାହାର ଶିକ୍ଷା ପାଇଁ ଜମିଦାର ବାବୁଙ୍କର ବିଶେଷ ଯତ୍ନ; ଗୃହରେ ମାଷ୍ଟର ରଖାଇ ଭାବୀ ଜାମାତାକୁ ଶିକ୍ଷା ଦେବାରେ ତ୍ରୁଟି କରନ୍ତି ନାହିଁ । ସେ ଆଧୁନିକ ରୁଚିସମ୍ପନ୍ନ ବ୍ୟକ୍ତି; ମାତ୍ର ଏକାବେଳକେ ଦେଶୀ ସାହେବ ନୁହନ୍ତି । ତାଙ୍କର ପରିବାର ନିର୍ଦ୍ଦୋଷ ହିନ୍ଦୁ ପରିବାର ହେଲେ ମଧ ସୁପ୍ରତିଷ୍ଠିତ ବାଳିକା ବିଦ୍ୟାଳୟରେ ଶେଫାଳୀର ପଠନରେ ବାଧା ନାହିଁ । ସେ ଦକ୍ଷତା ସହକାରେ ଅପର ପ୍ରାଇମେରୀ ପାସ୍ କରିଅଛି । ସୂଚୀବିଦ୍ୟା, କଳାବିଦ୍ୟା, ରନ୍ଧନବିଦ୍ୟାରେ ପଟୁତା ଲାଭ କରିଅଛି ।

ତାହାର ପିତା ବହୁ ବ୍ୟୟରେ, ବହୁ ଅନୁସନ୍ଧାନରେ ସରଯୂ ନାମ୍ନୀ ଜନୈକା ଭଦ୍ରବଂଶୀୟା ବିଧବା ମହିଳାଙ୍କୁ କଲିକତାରୁ ଅଣାଇ ଗୃହରେ କନ୍ୟାକୁ ନାନା ବିଷୟରେ ଶିକ୍ଷା ଦେବାର ବ୍ୟବସ୍ଥା କରିଅଛନ୍ତି । ଶେଫାଳୀ ଜମିଦାରୀର ଭାବୀ ଉତ୍ତରାଧିକାରିଣୀ, ସେ ଜ୍ଞାନବତୀ କର୍ମକୁଶଳା ଏବଂ ସୁଗୃହିଣୀ ହେବ, ଏହାହିଁ ତାଙ୍କର ଇଚ୍ଛା । ଇନ୍ଦୁମୁଖୀ ହିନ୍ଦୁ ନାରୀର ଚୂଡ଼ାନ୍ତ ଆଦର୍ଶ ସ୍ୱରୂପ ନ ହେଲେ ହେଁ, ଅତିଶୟ ନମ୍ରପ୍ରକୃତି ଓ ସ୍ୱାମୀ ପ୍ରତି ଏକାନ୍ତ ଭକ୍ତିମତୀ । ସେ ସରଳା, ଛନ୍ଦ କପଟ ତାଙ୍କୁ ଅଜଣା; ଶେଫାଳୀ ତାଙ୍କ ନୟନର ମଣି ସ୍ୱରୂପ, ତାହାକୁ ଅତି ଯତ୍ନରେ ପାଳନ କରିବା ଓ ସୁଶିକ୍ଷା ଦେବା ତାଙ୍କର ନିତ୍ୟବ୍ରତ ।

## (୨)

ସନ୍ଧ୍ୟା ଉତ୍ତୀର୍ଣ୍ଣ ପ୍ରାୟ । ଉପାଧାନରେ ଈଷତ୍ ଆଉଜି ପଡ଼ି ଅନୁ ଏକଦୃଷ୍ଟିରେ ଶେଫାଳୀକୁ ଅନାଇ ଅଛି । ଉଭୟେ ଏକାକୀ; ମାତ୍ର ପରସ୍ପରର କି ସମ୍ବନ୍ଧ ଉଭୟେ ଅଜ୍ଞାତ । ଭ୍ରାତା ଭଗିନୀ ତୁଲ୍ୟ ବା ତତୋଽଧିକ ପରସ୍ପର ପ୍ରତି ଅନୁରକ୍ତ । ଅନୁ ଜାଣେ ସେ ଶେଫାଳୀର ଭ୍ରାତା ନୁହେଁ, ଶେଫାଳୀ ବିଶେଷ କିଛି ଜାଣେ ନାହିଁ । ଶେଫାଳୀର ସ୍ୱଭାବଗତ ବିଶେଷ ଦୋଷ, ସେ ବଡ଼ କ୍ରୋଧୀ । କ୍ରୋଧ ସମୟରେ ସେ ଜ୍ଞାନଶୂନ୍ୟ ହୁଏ । ଯାହା ମୁହଁରେ ଆସେ ତାହାହିଁ କହିଯାଏ । ମାତ୍ର ସେତିକି । ଦୁଇଦଣ୍ଡ ପରେ ସବୁ ଭୁଲିଯାଏ । ଅନୁ ତଦ୍‌ବିପରୀତ, ଶାନ୍ତ ଓ ଦୃଢ଼; ମାତ୍ର

ଶେଫାଳୀକୁ ଚିଡ଼ାଇବା ତାହାର ରୋଗ । କଥାକଥାକେ ତାକୁ ବିରକ୍ତ କରିବା ତାହାର ବିଶେଷ ଆମୋଦ ଓ ପ୍ରଧାନ ସୁଖ ।

ତାହାର କ୍ଷତ ଆରୋଗ୍ୟ ହୋଇଗଲାଣି । ସାମାନ୍ୟ ଦୁର୍ବଳ ମାତ୍ର । ପ୍ରାୟ ସବୁବେଳେ ବିଛଣାରେ ଉଠି ବସିଥାଏ ଏବଂ ଶେଫାଳୀ ସହିତ ଗଳ୍ପ କରେ । ବର୍ତ୍ତମାନ ସନ୍ଧ୍ୟାରେ ସୁଦ୍ଧା ସେହି କାର୍ଯ୍ୟ ଲାଗିଅଛି । ଅନୁ ଗଳ୍ପ କରୁଅଛି, ଅନର୍ଗଳ ବକି ଯାଉଅଛି; ମାତ୍ର ସେଥିରେ ଶେଫାଳୀର ମନଯୋଗ ଥିଲା ପରି ଜଣାଯାଉନାହିଁ । ତାହାର ମୁଖ ଭାରି ଗମ୍ଭୀର । କାରଣ ଦୁଇଦିନ ହେଲା ଉଭୟଙ୍କର କଳହ ହୋଇଅଛି । ସେଥିପାଇଁ ପରସ୍ପରର ବାକ୍ୟାଳାପ ନାହିଁ । ଏଥି ପୂର୍ବରେ ମଧ ବାରମ୍ବାର କଳହ ଲାଗୁଥିଲା; ମୀମାଂସା କରୁଥିଲେ ବୃଦ୍ଧ ଦୀନବନ୍ଧୁ । ଏକବର୍ଷ ହେଲା ତାଙ୍କର କାଳ ହେବାରୁ ମୀମାଂସ କରିବାକୁ କେହି ନାହିଁ । ସେମାନେ କଳହ କରନ୍ତି, ରୁଷାରୁଷି ହୁଅନ୍ତି, ଏକସପ୍ତାହ ବା ଏକପକ୍ଷ ବାକ୍ୟାଳାପ ବନ୍ଦ କରନ୍ତି, ପୁଣି ନିଜେ ନିଜେ ମିଶନ୍ତି । ଆଜି ମଧ ସେହିପରି କଳହର ପ୍ରଧାନ କର୍ତ୍ତା ଅନୁ । ସେ ଶେଫାଳୀକି ଗର୍ବୀ ଆଖ୍ୟା ପ୍ରଦାନ କରିଅଛି । ଗର୍ବିତା ସୁନ୍ଦର ବଦନ ନତ କରି ବସିଅଛି । କଳହର କର୍ତ୍ତା କାରଣ ବୁଝି ପାରିଅଛି । ଯାହାହେଉ ବର୍ତ୍ତମାନ ଯେଉଁ ଭୂତ ଧରିଅଛି, ତାକୁ ଝାଡ଼ିବା ଆବଶ୍ୟକ । ଚତୁର ଗୁଣିଆ ମନ୍ତ୍ର ପ୍ରୟୋଗ ଆରମ୍ଭ କଲା । ଗଳ୍ପ ସ୍ରୋତ ବନ୍ଦ ହେଲା । ନିତାନ୍ତ ଶୁଷ୍କ ମୁଖରେ ମୁହଁ ଫେରାଇ ଶୟନ କଲା । ଏକମିନିଟ୍, ଦୁଇମିନିଟ୍, ଦଶମିନିଟ୍ କଟିଗଲା, ଶେଫାଳୀର ଅସହ୍ୟ ହେଲା, ସେ ନ ଜାଣିଲା ପରି ତାକୁ ଚିମୁଟି ଦେଲା । ହଠାତ୍ ଚମକିପଡ଼ି ଅନୁ ଉଠି ବସିଲା, "ମୋତେ ବିଛା କାମୁଡ଼ିଲା ।" ତକିଆ ବିଛଣା ସମସ୍ତ ଲେଉଟାଇ ପକାଇଲା, ତାହାର ମୁଖରେ ଭୟର ଚିହ୍ନ । ଶେଫାଳୀ ହାସ୍ୟ ସମ୍ବରଣ କରିପାରିଲା ନାହିଁ । ଦୁଇଦିନର ରାଗ ଉଭେଇ ଗଲା । ହସି ହସି ଗୃହାନ୍ତରକୁ ପଳାଇଲା ।

ଅନୁ ଡାକିଲା; ସହାସ୍ୟ ବଦନରେ ଶେଫାଳୀ ଉପସ୍ଥିତ ହେଲା; ହସ୍ତରେ ପିତୃପ୍ରଦତ୍ତ ପୁତଳିକା, ଅତି ସୁନ୍ଦର ଚିନିବାସନର କୁଣ୍ଢେଇ । ଗର୍ବିତା ଅହଙ୍କାରରେ ଫୁଲି ଉଠି ପିତୃ ଉପହାର ଅନୁକୁ ଦେଖାଇଲା । ଅନୁର ଭାରି ହିଂସା ହେଲା; ପରସ୍ପର ଛଡ଼ାଛଡ଼ି ଆରମ୍ଭ କଲେ, ହରି ବାବୁ ଆସି କଳହ ମୀମାଂସା କରିବାକୁ ପ୍ରବୃତ୍ତ ହେଲେ । ଅଭିମାନୀ ଅନୁ କିଛି ପାଇ ନାହିଁ । ତାହାର ଚକ୍ଷୁ ଲୋତକରେ ଛଳଛଳ । ମୁଖ ତଳକୁ କରି କହିଲା; "ବାବା, ମୋର କଣ କିଛି ନାହିଁ ?"

ଗୋଟିଏ ସୁନ୍ଦର ଫାଉଣ୍ଟେନ୍ ପେନ୍ – ଆଉ ଆହ୍ଲାଦର ସୀମା ନାହିଁ । ବାବା କଲିକତାରୁ ମଗାଇଥିଲେ ଶେଫାଳୀର କୁଣ୍ଢେଇ; ସେ ଖେଳଘର ଭାତ କରିବ, ପୁଅ ବିଭା କରିବ, ଆଉ ଅନୁ ସ୍କୁଲ ଛାତ୍ର, ତାହାର ଫାଉଣ୍ଟେନ୍ ପେନ୍, ସେ ଲେଖାଲେଖି କରିବ । ମାତ୍ର ଏତିକି ନୁହେଁ । ପୁଣି ଆସିଲା । ଭୃତ୍ୟ ବୃହତ୍ ପାର୍ଶଲ ବାକ୍ସଟା ଦେଇଗଲା । ଗୋଟିଏ ଗୋଟିଏ ସୁନ୍ଦର ପଦାର୍ଥ ବାହାରି ପଡ଼ିଲା । ଶେଫାଳୀର କୁଣ୍ଢେଇ, କୁଣ୍ଢେଇର ସାଜ, ମେଜ, ଚୌକି, ଖଟ, ଆଲମାରୀ, ବାସନ, ପିଆଲା ପିରିଚ, ପୁଣି ବ୍ୟାବହାରିକ ସିଲାଇ ବାକ୍ସ, ଚିତ୍ର ଆଲବମ୍, ସେଣ୍ଟ, ସାବୁନ୍, ଫିତା, କାଚ ଇତ୍ୟାଦି, ଇତ୍ୟାଦି । ଶେଫାଳୀର ଏତେ, ଆଉ ଅନୁର ଏପର୍ଯ୍ୟନ୍ତ ଗୋଟିଏ ହେଲେ ପଦାର୍ଥ ବାହାରିଲା ନାହିଁ । ଛାର ଫାଉଣ୍ଟେନ୍ ପେନ୍ ମାତ୍ର । ଅନୁ ନିରାଶ ହେଲା । ନା, ନା, ଅନୁର ବାକ୍ସ ବାହାରିଲା । ରବର, କାଳି, ଦୁଆତ, ନିବ୍, କାଚ କଲମ, ପେନ୍ସିଲ୍‌କଟା କଳ ।

ଆଉ ଅତି ସୁନ୍ଦର, ଅତିପ୍ରିୟ, ଅନୁର ବିଶେଷ ପ୍ରାର୍ଥିତ, ହଳେ ବାଦାମୀ ଯୋତା, କଲିକତାର ତିଆରୀ ଇଙ୍ଗ୍‌ଲିସ୍ ସୁ । ଆଉ ତା ପଛକୁ ଗାର୍ଟର, ଗେଞ୍ଜି, ମୋଜା ! ଶେଫାଳୀର ମୁଖ ଶୁଖିଗଲା । ଅନୁର ଏତେ ଆସିଛି, ତା'ର ଛାର କୁଣ୍ଢେଇ କେତୋଟି ! ଅଭିମାନିନୀ କାନ୍ଦି ପକାଇଲା; ମାତ୍ର ହଠାତ୍ ଏ କଣ ? ସୁନ୍ଦର ସେମିଜ୍, କ୍ଷୁଦ୍ର ପେଟି କୋଟ୍, ଛୋଟ ଜ୍ୟାକେଟ୍ । ଏଥିରେ ଉଭୟଙ୍କର ଆନନ୍ଦ ପୂର୍ଣ୍ଣ । ପୂଜା ଛୁଟି ନିକଟ, ପୂଜାର ଆୟୋଜନ ହେଲାଣି ! ପିଲାଙ୍କର ପୂଜା ଉପହାର କଲିକତାରୁ ଆସିଲା । ପିଲାମାନଙ୍କର ଦେଖା ସରିଲା । ଭୃତ୍ୟ ଦୋଳି ଆଲମାରୀରେ ବନ୍ଦ କଲା । ଶେଫାଳୀ ଓ ଅନୁ କଳହ ଭୁଲିଗଲେ । ଶେଫାଳୀ ଚିନ୍ତିତା ହୋଇପଡ଼ିଲା, ପୁଅ ଆସିଛି, ଝିଅ ଆସିଛି, ବାହାଘର ହେବ । କ'ଣ କ'ଣ କରିବ, କେତେ ଲୋକ ନିମନ୍ତ୍ରଣ କରିବ, କ'ଣ କ'ଣ ରାନ୍ଧିବ, ଏ ସବୁ ସେ ଠିକ୍ କରିପାରୁନାହିଁ । ବଡ଼ ବ୍ୟସ୍ତ ! ବାହାଘର କ'ଣ ସାମାନ୍ୟ କଥା । ଦୁଇ ଦୁଇଟା ପୁଅ ଝିଅ । ବଡ଼ ବୋଝ । ବିଚାରୀ ଅନୁର ଶରଣ ନେଲା । ବିଜ୍ଞବୃଦ୍ଧ ଅନୁ ତାହାର ଚିନ୍ତାରେ ବିଚଳିତ ହେବାର କୌଣସି କାରଣ ନ ପାଇ କହିଲେ, "ଏହି କଥା, ମୁଁ ସବୁ ହିସାବ ପତ୍ର ରଖିବି, ନିମନ୍ତ୍ରଣ କରିବାକୁ ଯିବି, ମୋର ଫାଉଣ୍ଟେନ୍ ପେନ୍‌ରେ ଲେଖିବି ଏକା । ଆଉ ଦେଖ ଶିଉଳି, ତୋର ଏତେ କାମ କରିବି, ଆଗତୁରା କିଛି ବହିନା ନ ଦେଲେ ଚଳିବ ନାହିଁ ।" ଚତୁରା ଶେଫାଳୀ ବୁଝିଲା, "ହଁ, ହଁ, ଗୁଡ଼ି ଉଡ଼େଇବୁ, ପଇସା ମାଗୁଛୁ । ଥାଉ ତୋ କାମ, ମାଳତୀ ଅପା କରିଦେବ ।"

ଶେଫାଳୀକୁ ବହଲାଇ କହିଲା, "ଦେଖ ଶିଉଳି, ମାଳତୀଅପା ମୂର୍ଖ । ମୁଁ ଇଂରାଜୀରେ ହିସାବ ଲେଖିବି, ଆଉ ଝିଅ ଶାଶୁଘରକୁ ଗଲେ ତାକୁ ଛାଡ଼ିବାକୁ ଯିବି, ମୋର ନୂଆ ଯୋତା, ଗେଞ୍ଜି କମିଜ୍ ସବୁ ସେଦିନ ପିନ୍ଧିବି । ଯେତେ ହେଲେ ବାହାଘର ।"

ସତ କଥା, ଯେତେହେଲେ ବାହାଘର, ସେହିକ୍ଷଣି କାଗଜ କଲମ ଆସିଲା, ବାହାଘର ନିମନ୍ତ୍ରଣ ଫର୍ଦ୍ଦ ହେଲା, ପ୍ରଥମ ବାବା, ଦ୍ୱିତୀୟ ବୋଉ, ତୃତୀୟ ମାଳତୀ ଅପା ଘର, ଚତୁର୍ଥ ସେବତୀ ନାନୀ ଘର, ପଞ୍ଚମ ବରକର୍ତ୍ତ୍ରୀ ଜାନକୀ ଘର, ଷଷ୍ଠ କନ୍ୟାକର୍ତ୍ତ୍ରୀ ଚମ୍ପା ଘର । ସବୁ ହେଲା, ସମସ୍ତେ ନିମନ୍ତ୍ରିତ ହେଲେ । ଇଚ୍ଛାରେ ହେଉ ବା ଭୁଲ୍‌ରେ ହେଉ ଶେଫାଳୀ ଅନୁ ନାମ ଛାଡ଼ି ଗଲା । କାର୍ଯ୍ୟ ଶେଷ ହେଲା, ରାଗରେ ଅନୁ ମୁହଁ ଫୁଲାଇଲା । "ରଖ ଲୋ ତୋ ବାହାଘର, ଏତେ କାମ କରିବି, ମୋତେ ପୁଣି ନିମନ୍ତ୍ରଣ ନାହିଁ ! ବିନା ନିମନ୍ତ୍ରଣରେ ତୋ ଘରେ ଖାଇବାକୁ ଯିବି ? ମୁଁ କ'ଣ ଏକଘରିକିଆ ?"

"ହଁ, ହଁ, ତୋ ନାଁ ଲେଖ ।" ଉତ୍ସୁକ ଭାବରେ ଭୀତା ଶେଫାଳୀ କହିଲା, ପଛେ ଅନୁ କଳହ କରିବ, ବାହାଦିନ ଅନର୍ଥ ଘଟାଇବ । କାରଣ ସେଥିରେ ସେ ବିଶେଷ ପଟୁ, ଶେଫାଳୀର ମୃତ୍ତିକା ଗୃହ, ଛୋଟ ଛୋଟ ଚୁଲ୍ଲୀ ଭାଙ୍ଗିବାରେ ବଡ଼ ପାରଗ । ଅଲକ୍ଷ୍ୟରେ ତରକାରୀରେ ଅଯଥା ଲୁଣ ଦେଇ ଥରେ ଶେଫାଳୀକୁ ବିବ୍ରତ କରିଥିବା କଥା ସେ ଭୁଲି ନାହିଁ ।

କାର୍ଯ୍ୟ ଶେଷ ହେଲା, ଅନୁର ପ୍ରାପ୍ୟ ଦୁଇଗଣ୍ଡା ପଇସା, ଶେଫାଳୀ ବଡ଼ କଷ୍ଟରେ ଆଣିଦେଲା । ଉପାଧାନ ତଳେ ଯତ୍ନରେ ରକ୍ଷାକରି ଅନୁ ଶୟନ କଲା । ଅନୁ ଗାଢ଼ ନିଦ୍ରାଭିଭୂତ, ଧୀରେ ହାତ ଗଳାଇ ଶେଫାଳୀ ପଇସାତକ ନେଇ ପଳାଇଗା । ସକାଳେ ଉଠି ଅନୁ ତକିଆତଳ ଖୋଜିଲା । ପଇସାର ଚିହ୍ନବର୍ଣ୍ଣ ନାହିଁ ।

ସେତେବେଳକୁ ସାରଦାର ପିଲାପିଲିର ସମ୍ଭାବନା । ସେ ବି କାମଟା ତୁଲେଇନବା ଆଶାରେ ମୁହଁ ଉପରେ ଆଉ କିଛି କହିଲା ନାହିଁ । ଘରେ ତ ଲୋକା ଯାଙ୍କୁ ଥୟ-ଥାୟ କରି ଦେଇଗଲା । ଏଣେ ଜାତିବାଲା ତାକୁ କଲେ ଜାତିରୁ ଅଟକେ । ଗେଲ୍ହୀ ଆଉ ତା'ଝିଅ ଏତେ ଦିନ କୁଆଡ଼େ ଥିଲେ । ବାଉରୀ ହାଣ୍ଡିରେ ଖାଇଛନ୍ତି କି ହାଡ଼ି ହାତରେ ଖାଇଛନ୍ତି କିଏ ଜାଣେ ? ମାଇକିନାଁ ଝିଅ ଘରୁ ଗୋଡ଼ କାଢ଼ିଛନ୍ତି, ତାକୁ ପୁଣି ଏ ଘରେ ପୂରେଇଲା ।

ମାତ୍ର ଲୋକା ଜାତିକି କୋଉ ଖାତର କରେ ? ତା'ଭାରିଯା ଚିଡ଼ିଚିଡ଼ି ହେଲାରୁ କହିଲା, "ମ, ଏଣ୍ଡୁରୁ ସାଇବ କଣା, ମୋ' ଆଣ୍ଠୁ ଆତୁ ବୁଝାମଣା," ଏଇ ଅଲ୍ହୀଆ ଜାତିକି ମୁଁ ଡରିବି ? ଲୋକେ ମଦ ଗଞ୍ଜେଇ ଖାଇଲେ ତାଙ୍କ ଜାତି ଯାଉ ନାହିଁ । ରାଣ୍ଡ ଅରଖିତଙ୍କ ଜମିବାଡ଼ି ବୁଡ଼େଇ ଦେଲେ ତାଙ୍କୁ ପାଞ୍ଚ ପଞ୍ଚୁରୁ ସଜା ନାହିଁ । ଲୋକ ଦି'ଟାକୁ ଆଶ୍ରା ଦେଲାରୁ ହେଲା ମୋର ମହାପାପ । ଥାଉନ୍ତୁ ତାଙ୍କ ଜାତି ନେଇ ସେହିମାନେ । ମୁଁ ତାଙ୍କୁ ଡରେ ନାହିଁ । ତା'ଭାରିଯା ଚୁପ୍ । ଏଗାରତୁଣ୍ଡୀ, ନଅତୁଣ୍ଡୀ ସକାଶେ ଲୋକନାଥ ଜାତିରୁ ଅଟକେ ହେଉଛି, ଏ କଥା ଜମିଦାର ବାବୁ ଶୁଣିପାରିଲେ । ଦିନେ ଲୋକନାଥକୁ କହିଲେ, ଚାଲ ଗୋଟାଏ ମଉଜ କରିବା ନଅତୁଣ୍ଡୀ ଯେମିତି ଖୋରଣୀ ତାକୁ ଠିକ୍ ସେମିତି ଗୋଟିଏ ବର କରି ବାହା ଦେଇଦବା । ତମ ଉପରୁ ବୋଝ ଭାରଟା ଯିବ । ବାବୁର ଆଗ କଥା ଲୋକନାଥର ମନେ ପଡ଼ିଗଲା; କିନ୍ତୁ ସେ ହଉଛନ୍ତି ମୁନିବ ତାଙ୍କୁ କ'ଣ କହି ହବ ? କହିଲା, "ହଉ ଆଜ୍ଞା ସତକଥା, ରତନୀ ବାହା ହେଇଗଲେ ଜଞ୍ଜାଳ ଯାଏ ।" ହେଲେ ଏଡ଼େ ଖୋରଣୀକି ସତରେ କିଏ ବାହା ହବ ? ବାବୁ ତା'ମନ କଥା ଜାଣିପାରି କହିଲେ, "ଲୋକନାଥ, ଆମେ ରଇତ ଭିତରୁ ଗୋଟାଏ ଚଷା ଟୋକା ଦେଖି ବାହା କରିଦବା । ମୁଁ ପଛେ ତାକୁ ଦି'ମାଣ ଜମି ଯଉତୁକ ଦେବି । ଗୋଟାଏ ପୁଣ୍ୟ କାର୍ଯ୍ୟ ତ ହବ । ଲୋକନାଥର ଏଥିରେ ନାହିଁ କରିବାର କ'ଣ ଥିଲା ?

ବାବୁ କଥା ଠିକଣା ହେଲା । ଲୋକନାଥ ଘରକୁ ଅଇଲା । ତା'ଭାର୍ଯ୍ୟା ଏକଥା ଶୁଣି ରତନୀ କାନରେ ପକେଇଲା । ସେ ତ ରାଗରେ ଗୋଟାକୁ ଗୋଟା । ତାକୁ ପୁଣି ବାହା ହବ ଏଡ଼େ ଛାତି କାହାର ? ତା'କଥାରେ ସାରଦାର ଦେହ ଜଳିଗଲା । ତା'ସକାଶେ ଏମାନେ ଏକଘରିକିଆ, ଏ କଥା ସାରଦା ମୋଟେ ଭୁଲି ପାରୁନଥାଏ । ତା'ଇଚ୍ଛା ହେଉଥାଏ ଏଇକ୍ଷଣି ରତନୀକି ପୁଣି ଘରୁ ତଡ଼ିଦେବ । ହେଲେ ସ୍ୱାମୀ ମୁହଁକୁ ଚାହିଁ ଆଉ କିଛି କହିପାରୁନଥାଏ, ମାତ୍ର ଲୋକା ଶାଶୁ ବା କାହିଁକି ସହିବ ? ସେ ଆଉ ସମ୍ଭାଳି ପାରିଲା ନାହିଁ । ଝିଅକୁ ଦେଖେଇ କହିଲା, "ଏସବୁ ଅର୍ଖିତ ଟାଣ, ଥୋଇ ଦଉ ତା' ବୋପା ଭାଇ ଘରେ । ଏଠି ମୋ'ଝିଅ ଉପରେ କର୍ତ୍ତାପଣିଆ କରିବାକୁ କିଏ କହିଲା ମ, ଅଇଁଠା ଖାଇକି ? ରତନୀ ବଡ଼ ଛୋଟ ମାନିବା ଜନ୍ତୁ ନୁହେଁ । ସେ ବି ବୁଢ଼ୀକି ଖୁବ୍ ବତେଇଲା । ଶେଷକୁ ରାଗରେ ରତନୀ ଘରୁ ବାହାରି ଗଲା । ଗେହ୍ଲୀ ଯାଇଥାଏ ଆର ଗାଁକୁ ଧାନ କୁଟି । ଲୋକା ସାଇରେ କାହା ଘରକୁ ବୁଲି ଯାଇଥାଏ । ରାତି ନଅଟା ବେଳକୁ ଆସି ଶୁଣିଲା ରତନୀ ଘରୁ ବାହାରି ଗଲାଣି । ତାକୁ ଅନ୍ଧାର ଦିଶିଲା । କାଲି ତା' ବାହାଘର, ଆଜି କନିଆ ପଳେଇଲାଣି, ବାବୁ କ'ଣ ଭାବିବେ ? ତାଙ୍କ ସାଙ୍ଗେ ଥଟ୍ଟା କରୁଛି । ବଡ଼ ବ୍ୟସ୍ତ ହୋଇ ଭାର୍ଯ୍ୟାକୁ ବକି ବକି ଲଣ୍ଠନ ଧରି ଖୋଜି ବାହାରିଲା । ଗେହ୍ଲୀ ଆସି

ଏ ଖବର ଶୁଣି କାହାକୁ ମାରିବ କି ତାରିବ । ସେ ବି ଲୋକା ସାଙ୍ଗେ ବାହାରିଲା । ଘଡ଼ିଏ ଖଣ୍ଡେ ଏଣେ ତେଣେ ଖୋଜୁ ଖୋଜୁ ଆମ୍ବତୋଟାରେ ତାକୁ ପାଇଲେ । କଇଁ ଫୁଲ ପରି ଜହ୍ନ ପଡ଼ିଛି । ସୋରିଷ ବୁଣି ଦେଲେ ଖୁଣ୍ଟି ହେଇଯିବ । ଗୋଟାଏ ଆମ୍ବ ଗଛ ମୂଳେ ଏକାଟିଆ ରତନୀ ବୁଲୁଥାଏ । ଏମିତି ଜାଗାକୁ ଯିବାକୁ ପୁରୁଷ ଡରିବେ । ରାଗରେ ତା'ର ଡର ଭୟ ନଥାଏ । ଲୋକନାଥ କେତେ କୁହା ପୋଛା କରି ଶେଷକୁ ହାତ ଧରି ତାକୁ ଘରକୁ ନେଲା । ସେତେବେଳକୁ ରାତି ବାରଟା । ଦୁହେଁ ଘରକୁ ଗଲେ । ଏଣେ ସାରଦା ମୁହଁ ଫୁଲେଇ ବସିଥାଏ । ସଭିଙ୍କି ବୁଝାଉ ବୁଝାଉ ପୁଣି ତିନିଘଡ଼ି ଗଲା ।

ସେଦିନ ଉଠୁ ଉଠୁ ତାଙ୍କୁ ବେଳ ପ୍ରାୟ ଆଠଟା ହେଲା । ଏମିତି ସମୟରେ ଗୋଟିଏ ଲୋକ ଆସି ହାଜର । ଲୋକା ତ ତାକୁ ଘଡ଼ିଏ ଖଣ୍ଡେ ଏକାଦୃଷ୍ଟିରେ ଅନେଇ ରହିଲା । ଚଷା ଚାଷେଣ୍ଡିୟା ଚେହେରା, ଭୂତମୁଣ୍ଡିଆ, ଖଣ୍ଡେ ଲେଙ୍ଗୁଟି ମାରିଛି, କଳା ମୁସୁ ମୁସୁ ଚେହେରା । ଆସି ହଠାତ୍ ଲୋକା ଗୋଡ଼ ତଳେ ଲମ୍ବଦଣ୍ଡା ହୋଇ ପଡ଼ିଗଲା । ଲୋକା ଏକାବେଳକେ ହତବୁଦ୍ଧି । ଲୋକଟା ହଠାତ୍ ଉଠି ବାୟାଙ୍କ ପରି ସ୍ୱରରେ କହିଲା ମଣିମା, ସାଆନ୍ତେ ମୋତେ ବଢେଇଛନ୍ତି ବା' ହବାକୁ । ମୋ' ନାଁଟି ଫକୀରା । ବାପ ନାଁଟି ଭରତିଆ । ମୋ'ଅଣ ଜେଜିବାପା ନାଁଟି ଆରତିଆ, ମୋ'ପଣ ଜେଜିବାପ ନାଁଟି ସାରତିଆ । "ଲୋକା ତା'ସ୍ୱରରେ ଚିଡ଼ି ଉଠି ଗୋଡ଼ରୁ ଖଡ଼ଉ କାଢ଼ିଲା । ମାରିବାକୁ ଗୋଡ଼ାଇଲା । ବର ଖଣ୍ଡେ ଦୂର ଦୌଡ଼ି ଯାଇ, ପୁଣି ନେଉଟି ଆଇଲା । ଲୋକନାଥ ସେତେବେଳକୁ ଭିତରକୁ ପଶିଗଲାଣି । ଲୋକଟା ଆସି ଦୁଆରେ ଡାକିଲା । ଗେଲ୍ହୀ ବାହାରି ପଇଲା । ତା'ବିଭୀଷଣ ମୂର୍ତ୍ତି ଦେଖି ଗେଲ୍ହୀ ଆଉ ସମ୍ଭାଳି ନପାରି କହିଲା, "ମାଁଲୋ କି ଅପରଛନିୟା ଅବରଜିୟାଟା ଏ କୋଉ ଗାଡ଼ରୁ ଉଠିଆଇଛି ।" ଲୋକଟା କଟମଟ ହେଇ ଗେଲ୍ହୀ ମୁହଁକୁ ଦଣ୍ଡେକାଳ ଚାହିଁ କହିଲା, "ମୁଁ ବା' ହବାକୁ ଆଇଚି ।"

ଗେଲ୍ହୀ ଘୃଣାରେ ମୁହଁ ବୁଲେଇ ଦେଇ କହିଲା, ତୁ ଛତରାଟା କାହାକୁ ବାହା ହବୁକିରେ ? "ତୋର ଯୋଉ ରୂପ ଲୋକେ ଖାଲି ଧାଇଁ ପଡ଼ିବେ ଝିଅ ଦବାକୁ । ଗେଲ୍ହୀ ଆଉ କ'ଣ କହିଥାନ୍ତା, ବରଟା ତ ଦୁମକିନା ତା ଗୋଡ଼ ତଳେ ପଡ଼ିଗଲା । ବଡ଼ ପାଟି କରି କହିଲା, "ମାଉସୀ ଲୋ ମୁଁ ବା' ହବାକୁ ଆଇଚି, ଆଖି ଛୁଁଚି, ମୁଁ ବା' ହବାକୁ ଆଇଚି, ଦାନ୍ତରେ କୁଟା ହଉଚି, ମୁଁ ବା' ହବାକୁ ଆଇଚି, ତୋ' ରାଣ ମୁଁ ବା' ହବାକୁ ଆଇଚି; ତୋ ପୁଅ ରାଣ – " ଗେଲ୍ହୀ ଆଉ ସହିପାରିଲା ନାହିଁ, ଝାଡୁରେ ଦି' ପାହାର ଦେଲା, ଗୋଡ଼ରେ ଗଡ଼େଇ ଦେଇ, ପାଟି କରି କହିଲା, "ମଲା ମୋର ଅଫଳାଟା, ନିଆଁ ଲଗାଟା," ତା'ପାଟିରେ ଲୋକା ଦଉଡ଼ି ଆଇଲା, ରତନୀ ବି ଦଉଡ଼ି ଆଇଲା । ସେତେବେଳକୁ ଲୋକଟା "ବାପା ଲୋ, ମା'ଲୋ, ହାଡ଼ ଭାଙ୍ଗିଲା ଲୋ କହି ଏଡ଼େ ପାଟି କଲା ଯେ ସାଇଯାକ ଦଉଡ଼ି ଆଇଲେ । ସେମାନେ ତ ୟାକୁ ଦେଖି ଅବାକ୍ । ଏମିତି ଅପରିଚ୍ଛନ୍ନ ମୂର୍ତ୍ତି, ଯମଦୂତ ପରି ଚେହେରା ଦେଖି ପିଲାଏ ବି ଡରିଗଲେ । ତାଙ୍କ ଡର ଦେଖି ସେ ତାଙ୍କ ପଛେ ପଛେ ଗୋଡ଼େଇଲା । ବଡ଼ ପାଟିରେ ହସିଲା, ତା'ମୁହଁରୁ ନାଳ ବୋହି ପଡୁଥାଏ । ଏଠି କଚାଡ଼ି ହ, ସେଠି ବାଡ଼େଇ ହ, ୟା ଗୋଡ଼ ଧ', ତା' ଗୋଡ଼ ଧ' ଲୋକ ଥାଟ-ପଟାଳି ଜମିଗଲେ । ସେ ବାହୁନି ନାଗିଚି, ଆଉ କାନ୍ଦୁଚି;

ଆଁରେ ମାଇଲେ ଲୋ, ହାଡ଼ ଭାଙ୍ଗିଲେ ରକ୍ଷାକର ରକ୍ଷାକର –
ପୋଡ଼ି ଯାଉ କିନା ବାହାଘର ।
ଶାଶୁ ମୋ'ବାଘୁଣୀକ, ଭାରିଯା ନାଗୁଣୀ
ମଲାଣି ଶଶୁର ବିଦିଆଧର ।
'ଆରେ ଗାଁବାଲା ରକ୍ଷାକର ।

ତା' କାନ୍ଦ ତା' ଢଙ୍ଗରେ ଲୋକେ କିଛି ବେଳ ଛିଡ଼ା ହୋଇଗଲେ । ଗେଲ୍ହୀ ତାକୁ, ତୁଚ୍ଛା ବାୟାଟାକୁ ଝାଡୁରେ ପିଟିଛି, ଏକଥା କେହି·ସହ୍ୟ କରିପାରିଲେ ନାହିଁ । ଲୋକା ଭାରି ରାଗିଯାଇ କହିଲା, ''ତୋର ମାଉସୀ, ଏ କି ଗୁଣ ! ଲୋକଟା ତୋ ଝିଅକୁ ବାହା ହବ କହିଲା, ମାତ୍ର କ'ଣ ବା ହେଇଯାଉଚି ନାଁ ସତେ ଆମେ ଦେଇ ଦେଉଚେ ।''

ଲୋକା କଥାରେ ବାୟା ଭାରି ଖୁସି । ହାତ ହଲେଇ ମୁଣ୍ଡ ହଲେଇ କହିଲା, ''ଯାଇଲ ! ମୋ ନାଁଟି ଫକୀରା, ମୋ' ବାପ ନାଁଟି ଭିକାରିଆ, ତା' ବାପ ନାଁଟି ସାରଠିଆ । ଆମେ ଛାତିରେ କରଣ ଖଣ୍ଡେଇତ, କରଣ ଖୁରାରେ ଦଣ୍ଡବତ । କିଅ ଲୋକି ମହାରଣା, ବାବୁ ମୋତେ ବଟେଇଚିନି ବା' ହବାକୁ, ଆମ ଖବର ବୁଝୁନା କିଆଁ ? ଆଲୋ ମାଉସୀ, ତୋ' ଗୋଡ଼ ଧରୁସି, କନିଆ ଆଣି ଦେ, ବାହା ସା ହୁଏଁ, ଘରକୁ ଯାଏଁ, ବେଳ ଯେ ମାଡ଼ି ଆଉଚି ! ଆଲୋ ମାଉସୀ, ମାଇଲେ ପଛେ ମାର, ଦେ'ଦି'ଟା ଝାଡୁ ପାହାର, ମୁଁ ସହିବି, ପାଟି ବୁଜିବି, ଆଖି ବୁଜିବି, କନିଆଟି ଆଣି ଦାଣରେ ଥୁଅ, ଭଲେ ଭଲେ ମୋତେ ବିଦାକି ଦିଅ ।'' ତା'ଗୀତ, ତା'ସ୍ୱରରେ ସଭିଏଁ ଖୁବ୍ ହସିଲେ । ସାଇ ମାଇପେ ରତନୀକି ଥଟ୍ଟା କରି କହିଲେ, ଆଲୋ ରତନୀ ତୋ' ବର ଲୋ ? ରତନୀଟି ରାଗରେ ଗୋଟା ଗୋଟା ! ଏଣେ ବର ତାକୁ ଦେଖି ତାଳି ମାରି ନାଚି ନାଚି କହିଲା; – ''ଏଇ ମୋ' କନିଆ, ଏଇ ମୋ କନିଆ ! ଆଲୋ ଚେପଟି ନାକୀ, ଛାମୁ ଦାନ୍ତୁରୀ, ନାକ କାନ୍ଦୁରୀ, ମାଧିଆ ମାଁ, ମୁଁ ତୋ' ବର ଲୋ ବର ଲୋ ! ମୋତେ ଅନା ଲୋ !'' ''ଆରେ ନିଁଅସିଆ ତୋ' ବରପଣିଆ ଚୁଲୀରେ ଯାଉକିନା'' ରତନୀ ତାକୁ ଖଣ୍ଡିଆ ଝାଡୁ ମୁଠା ଧରି ମାରି ଗୋଡ଼େଇଲା ! ''ଆଲୋ ମୋତେ ମାର ନାଁ ଲୋ ମୁଁ ତୋ' ବରଲୋ !'' ବର ପାଟି କରୁଥାଏ ।

ସେତେବେଳକୁ ସେଠି ଆଉ ଦି'ଜଣ ହାଜିର ! ବାବୁର ଭଣ୍ଡାରୀ ଟୋକା ଦାମା ବାରିକ, ତା'ସାଙ୍ଗରେ ଗୋଟାଏ ବୁଢ଼ା ନାହାକ । ବାଡ଼ି ଖଣ୍ଡେ ଧରିଚି, ଠୁକେଇ ଠୁକେଇ ଚାଲିଚି । ତା'ମୁଣ୍ଡର ବାଳ ଝୋଟପରି । ତା'କାଖରେ ବିଡ଼ାଏ ତାଳପତ୍ର, ହାତରେ ଗୋଟାଏ ପୁରୁଣା ଫଟା, ଉଇକଟା ପାଞ୍ଜି, ତା'ମଲାଟ କୁଆଡ଼େ ଗଲାଣି ! ବୁଢ଼ା ଥରେ ଥରେ କାଶୁଚି, ଥରେ ଥରେ ଛିଙ୍କୁଚି, ଥରେ ଥରେ ନାସ ଟିପେ ଟିପେ ଶୁଙ୍ଘୁଂଚି । ଆଉ ଅଡ୍ଂ ବଡ୍ଂ ବ୍ୟାଂ ଡ୍ୟାଂ କରି ଶ୍ଳୋକ ବୋଲୁଛି । ତା'ଦେହରେ ଗୋଟିଏ ସହସ୍ର ଗଣ୍ଠିଆ ଛିଣ୍ଡା କବଚା, ଏଡ଼େ ମସିଆ ଯେ କିଜାଣି ବରଷେ ହେଲା ଧୋବାଘର ମୁହଁ ଦେଖି ନାହିଁ; କାନ୍ଧରେ ତେଲ ଚିକିଟା ଚିରା ଗାମୁଛା: ତା'ର ବି ସେଇ ଦଶା: ବୁଢ଼ା ଏତେ ପାନ ଖାଉଛି ଯେ ଓଠ ଏମୁଣ୍ଡ ସେମୁଣ୍ଡ କଳା ପଡ଼ି ଥୋଡ଼ିଯାକ ନାଲି ବୋହି ପଡ଼ିଛି ।

ଦାମା ବାରିକ, ଭଣ୍ଡାରି ଟୋକା ବଗୁଲିଆ, ସେ ବୁଢ଼ାକୁ ବକୁଚି, ଗାଳି ଦଉଚି, ଚଞ୍ଚଳ ଚାଲ ହେ ଅଜା, ଉଛୁର ହେଲାଣି, ବର ଗଲାଣି ଭାରି ଆଗ ।

ଦାମା ବାରିକ ସ୍ୱର ଶୁଣି, ଲୋକା ପଚାରିଲା ତୁ କୁଆଡ଼େ; ଦାମା ଅଣ୍ଟା ଖୋସଣୀରୁ ଖଣ୍ଡେ ମସିଆ କାଗଜ ବାହାର କଲା, କହିଲା ଏଇ ଭାଷା ଜମିଦାର ବାବୁ ଦେଇଚିନି, ଭିକାରିଆ ପୁଅ ଫକୀରାକୁ ପଠେଇଚିନି, ତମ ଅତନୀ ନାନୀକି ବା' ହେବ । ଏଇ ନାହାକ, ଆଉ ବାହ୍ମଣହରିକା, ପାଲିଙ୍କିହରିକା ପଛରେ ଆଉଚି, ସଞ୍ଜଠେଇଁକି ଆସି ପହଞ୍ଚିବେ ଆଗ ଖଡ଼ି ପକେଇ ଜାତକ ଯୁଜା !

ଲୋକା ତ କାବା ! ମାଗିଖିଆ ବୁଲା ଫକୀରାଟିକୁ ବାବୁ ବର କରି ପଠେଇଛନ୍ତି । ଭାଷା ବି ପଢ଼ିଲେ । ହାକିମ ତ ! ତାଙ୍କୁ ସୂରଜ ଚନ୍ଦର ଡରିବେ । ମଣିଷ କଥା କ'ଣ ! ଗେଲ୍ହୀ ଏ କଥା ଶୁଣି ଭାରି ଖପା ! ସେ ପାଟି କରି ଜମିଦାରବାବୁକୁ ଖୁବ୍ ଶୋଧିଲା । ଲୋକା ଖାଲି ତା' ଗୋଡ଼ ଧରୁଥାଏ ମାଉସୀ, ତୁନି ହ' ! ମୋ' ଚାକିରିଟା ଛଡ଼ା ନାଁ । ଏ ଦାମା ସବୁ ଯାଇ ମୁନିବ କାନରେ କହିବ । ସଂସାର କରିଥିଲେ ଛାତିରେ ପଥର ପକେଇ ସହି । କଥାରେ କହନ୍ତି, ଯେତେ ଭାଇ ସେତେ ଘର, ଯେତେ କନିଆ ସେତେ ବର । ବରଟା ଏବେ କ'ଣ ଅସୁନ୍ଦର ହେଇଁଚି କି ଖଣ୍ଡିଆ ନାଁ, କଣା, କୁଜା । ଖାଲି ବର୍ଣ୍ଣଟା ମସିଆ ! ଆଉ ସଂସାରରେ ମର୍ଦପୁଅର ରଙ୍ଗ କିଏ ବାଛୁଥାଏ । ବାବୁ ଜମି ଦଶମାଣ ଦେବେ, ଘର କରିଦେବେ । ତୋ' ନାଗି ମୁଁ ଜାତିପାଟକରୁ ଅନ୍ତର ହେଇଚି, ସବୁ କଥା ଜାଣୁ; ପୁଣି ଏଡ଼େ ଅବୁଝା ।

ଲୋକା ରତନୀ ମାଁକୁ ବୁଝଉଛି । ଏଣେ ଦୁଆରେ ତାଙ୍କର ତାମସା ଲାଗିଛି । ଯାତ୍ରା ଦେଖିବାକୁ ଯେମିତି ଲୋକ ଜମିଗଲେଣି । ନ ଜାଣିବା ଲୋକେ ନାହାକକୁ ପଚାରୁଛନ୍ତି, "ହଇକିଏ ମଉସା, ଏ ବାୟାଟା କିଏ !" ମଉସା ସେଥିରେ ନାକକୁଞ୍ଚି, କପାଳ କୁଞ୍ଚି ଥରେ ଛିଙ୍କି କହିଲେ, "ଭଲା ରାଇଜକୁ ଅଇଲି, ଏ ତମ ଘର ଜୁଆଁଇ ଚିହ୍ନିନାଁ ? ଆରେ ବୋଇଲା କଣନାଁ : - ସେଠୁ ସ୍ୱର ବାହାରିଲା : -

ପଦିଁଆ ନାତୁଣୀ ବିଦିଆଁ ଝିଅଁ ଖୋରଣୀ ନଁ ତୁଣ୍ଡୀ
ରତନୀ ବର ଧୋଁଇ ଧାଇଁ କରି ଘରକୁ ନିଅ
ସିଧାଁ ଦେଇଁ ମେତେ ବିଦାୟ କର । -

ଆଁ କ'ଣ ବୋଇଲା : - ଆଁରେ ଆଣ ଆଣ ନଁଡ଼ିଆ, ଆଣ ଆଣ ସରୁଁ ଚୁଡ଼ାଁ - ଏଁ ଆଣ ଆଣ ଧୋଁତୀ ଚାଁଦର । ଆଜି ମୂଳା ନକ୍ଷେତ୍ରେ ବାହାଘର । ବର ନାଁଟି ଫକୀଁରା ଯା କହୁ କହୁ ସେହିକ୍ଷଣି ଲୋକା ପିଣ୍ଡାରେ ଖଡ଼ି ପଇଲା । ନାହାକ ଆଙ୍ଗୁଳି ଗଣି କହିଲା - "ବୃର୍ଚ୍ଛିକ କଁକଡ଼ା ମୀନସ୍ୟ ବିପ୍ରା"-ଆରେ ଫକୀରା :- ନାଁରୁ ହଉଚି, କକଁଡ଼ା ରାଶି, ପରୁଁବା ଆଷଢ଼ା ନଇଖତ୍ର - କନିଆଁ ନାଁଟା, ରତନାଁ ଦେଇ - ହଉଛି ବୃର୍ଚ୍ଛିକ, କରଁକଟ ମୀନସ୍ୟ ବିପ୍ରା :- ଏଁ ହଁଉଚି, ମଘାସିଂହ । ରାଶିଁକି ସୂଜୁଁଚି, ଏ ବୋଲେ ବିନାଁ -

"ଆପଣାଁ ଉଦଁର ପୂରିଁଲେ ତୋଷ;
କୋଦ୍ଧୀ ମାଁସ ଲୋଭାଂ ଅଟେ ବିଶେଷ
ବନ୍ଧୁଁ ମେଳେଁ ତାରଁ ନ ଆଇଁ ମନ,
କଟା ଚଇଁଖୁ, ଇଚ୍ଛେଁ ବନଗମନ ।"

ଏଁତକ ଗୁଣ ସିଂହ ରାଶିର !'' କେତେ ଲୋକ ନାହାକ ଆଉଚି ଦେଖିକି ଆବୃତ୍ତି ପଢ଼ଲେ, କିଏ ହାତ ଦେଖେଇଲା, କିଏ ରାଶି ଗଣେଇଲା । ନାହାକ ସଭିଙ୍କି ପଚାରୁ ଥାଏ, ଗୋଁଟାଏ ଫଳଁ ନାଁ କହିଲଁ ? ଉତ୍ତରରେ ଜଣେ କହିଲା ଡାଳିମ୍ବ । ନାହାକ ତାକୁ ଗଣି ଗାର କାଟି ବଡ଼ ବଡ଼ କରି ସଂସ୍କୃତ ପଢ଼ି ଉତ୍ତର କଲା ।

ସେଣେ ବର କ'ଣ କରିଛି ନାଁ ସୁଆଙ୍ଗ କରୁଚି । ପରସ୍ତେ ନାଚି ଯାଉଚି, ପରସ୍ତେ ବୁଲି ପଡୁଚି, ହାତରେ ତାଳି ମାରୁଚି ଆଉ ଗାଉଚି :-।

ବାଇଧରର ଅପାର ଗୁଣ -
ପଖାଳ ଭାତରେ ନ ଖାଏ ନୁଣ -
ପଦିଆ ଉଦିଆ ଏକାମାଁଆର
ବାଇଧର ଭାଇ ବିଦିଆଧର
ବାଇଧରର ଅପାର ଗୁଣ । -
ଭାଇ ଭାଉଜକୁ ଦୂରୁ କାଢ଼ିଲା
ପଟା ପାଉଟୀକି ଚିରି ପୋଡ଼ିଲା
ବାଇଧରର ଅପାର ଗୁଣ ।
ତପଡି ସାଥିକି ନାହିଁ ତୁଉଣ -

ବାଇଧରର ପୁଅ ବଟୁ ଶୁଣୁଥିଲା । ତା' ବାପ ନାଁରେ ଗୀତ ଶୁଣି ସେ ଲୋକଟାକୁ ଧାଇଁ ଆସି ଚାପୁଡ଼ାଏ କଷି ଦେଲା । ଲୋକେ ସବୁ ମିଶି ଗଲେ । କିଏ ବାୟାପକ୍ଷ କିଏ ବଟୁପକ୍ଷ । ସେଠି ଲାଗିଲା କଳି କନ୍ଦଳ, ଗୋଳମାଳ । ବାୟାକୁ ନେଇ ସେମାନେ ଗଲେ ବାଇଧର କତିକି ।

ସେତେବେଳକୁ ଦିନ ଦି'ପହର । ବାଇଧର ଘରେ ବିଶ୍ରାମ କରୁଥାଏ । ସେ ବି ଆସି ଦୁଆରେ ପଚାରିଲା, କ'ଣ କଥା, ବଟୁ ତାକୁ ସବୁ କହିଲା । ବାବୁ ଆଇଲେ, ଦେଈ ଝରକା ବାଟେ ଚାହିଁଲେ । ବାୟା ଗୀତ ଗାଉଛି ।

ବାଇଧରର ଅପାର ଗୁଣ, ବଡ଼ କୃପଣ
ପଖାଳ ଭାତକୁ ଖାଏ ନୁଣ । -

ବାଇଧରର ଭାରି ରାଗ ହେଲା । ସେ ତାକୁ ଧରି ଆଣିବାକୁ ହୁକୁମ ଦେଲା । ବାୟା ଆସି ନମ୍ବଦଣ୍ଡ ଗୋଡ଼ ତଳେ ପଡ଼ିଗଲା । ବାଇଧର ପଚାରିଲା, "ତୁ କିଏ ?'' ସେ ବଡ଼ ପାଟିରେ ହସି କହିଲା, ମୋତେ ଚିହ୍ନ ନାଁ-ମୁଁ ପରା ସରଦେଈପୁର ଗାଁ ଫକୀର ଓଲୁ ! ମୋ' ନାଁଟି ଫକୀରା, ମୋ' ବାପ ନାଁଟି ଭିକାରିଆ, ତା'ବାପ ନାଁଟି ଭରତିଆ, ତା ବାପ ନାଁଟି ଆରତିଆ, ତା'ବାପ ନାଁଟି ସାରତିଆ ।'' ବାଇଧର ଦେଖିଲା ତୁଚ୍ଛା ବାୟା ! ରାଗିକିନା ଘର ଭିତରକୁ ଗଲା । ଦେଈ ଝରକାବାଟେ ଅନେଇଛନ୍ତି । ବାୟା ତାକୁ ଦେଖି ଆଉ ଗୋଟିଏ ସ୍ୱର ବାହାର କଲା -

"ଆଲୋ ଫଟା ସୁନ୍ଦରୀ ଲୋ, ଫଟା, ସୁନ୍ଦରୀ; ଫଟା ସୁନ୍ଦରୀ, ଆପଣମାନେ ମୁଁ ଆପେ ଧୁତୁରୀ ଲୋ, କଳି ହୁନ୍ଦରୀ ଲୋ, ବୁଢ଼ୀ ବାନ୍ଦରୀ, ତୋଳିକି ଚାଉଳ, ଓଳିଏ ଖାଉ, ଶାଶୁ

ପଚାରିଲେ ମୁହଁ ଶୁଖାଉ, ଗୁରନ୍ତ ଆଗରେ ଖଚ ମିଛ କହୁ, ମନ ଭଙ୍ଗାଉ, ଆଲୋ ଫଟା ସୁନ୍ଦରୀ ଲୋ, କୋଦି ଗୋଦରୀ – ଫଟା ସୁନ୍ଦରୀ ।–

## ବୃହଣ୍ନୃପାହି କେବଳମ୍ ପାଞ୍ଚକଥା

ରତନୀର ବାହାଘର ହବ । କନିଆ ତ ରତନୀ, ବର ତ ଫକୀରା ବାୟା । ତାଙ୍କ ବାହାଘରେ ପୁଣି କି ରୋଷଣି କି ଜାକଜମକ । ଗହଣା ଭିତରେ ପିତଳ ଖଡୁ ମୁଠାଏ । ଲୁଗାଭିତରେ ରଙ୍ଗ ସୁରୁବାଲୀ ଶାଢ଼ୀଟା, ଯାନି ଯଉତୁକ କିଛି ନାହିଁ । ନାକକୁ କାନକୁ କିଛି ନାହିଁ, ବେକକୁ ଗୋଡ଼କୁ କିଛି ନାହିଁ । ଲୋକନାଥ ତ ଏକଘରିକିଆ, ପୁଣି ସେ ଜାତିର ଦରଜି, ଏମାନେ ଚଷା । କୁଟୁମ୍ବ ସଙ୍ଖୋଳା ନାହିଁ, କି ଖାନା ଭୋଜି ନାହିଁ ।

ରାତି ଦଶଘଡ଼ି ହେଲା । ବର ଆଇଲା । କେହି ଜାଣିଲେ ନାହିଁ ଯେ ବର ଆଇଲା ବୋଲି । ସୋର ଶବଦ କିଛି ନାହିଁ । ଗୋଟିଏ ଦଦରା ପାଲିଙ୍କିରେ ଆସିଥାଏ ବର, ଆଉ ଆଇଥାନ୍ତି ପଞ୍ଚାଏ ଗଉଡ଼ ଜଣେ ଥୁରୁଥୁରିଆ ବ୍ରାହ୍ମଣ, ସେଇ ପୁରୋହିତ । କନ୍ୟାକୁ ଘୋରି–ପୋରି ଆଣି ପିଢ଼ାରେ ବସେଇଲେ । ଏଣେ ବର ବେଦୀରେ ବସିଲା । ହାତଗଣ୍ଠି ପଇଲା । ସାଙ୍ଗେ ସାଙ୍ଗେ ପାଲିଙ୍କିରେ ବସି ବର କନିଆ ବିଦା ହେଲେ । ବିଧି ନାହିଁ କି ବରତ ନାହିଁ; ସବୁ ଅଦଭୂତ ଢଙ୍ଗର ।

ପାଲିଙ୍କିଟା ବଡ଼ ଦଦରା । ସେଥିରେ ପୁଣି ଦି'ଜଣ ବସିଲେଣି । ଗଉଡ଼ କାନ୍ଧେଇ ହୁମୁରା ଭାଇ କହି ଦଉଡୁଛନ୍ତି ।

ସେତେବେଳକୁ ରାତି ଗୋଟାଏ । ହଠାତ୍‌କିନା ପାଲିଙ୍କିର ପଟାଟା ଛାଡ଼ି ପଇଲା । ବଡ଼ ହଟହଟା କଥା; ଗଉଡ଼ ପାଲିଙ୍କି ତଳେ ଥୋଇଦେଲେ । ଏବେ ଯିବେ କେମିତି; ଆସି ପ୍ରାଏ ବାଟରେ ହେଲେଣି । ଚାରିଆଡ଼େ ଘୋର ଜଙ୍ଗଲ । ଗାଁ–ଗଣ୍ଡା କିଛି ଦିଶୁନାହିଁ । ନିଶା ସାଇଁ ସାଇଁ ଗରଜୁଚି । ବରଟା ଡେଇଁ ପଡ଼ିଲା, କନିଆକୁ ଟାଣି ବାହାରେ ଛିଡ଼ା କରିଦେଲା । ରତନୀ ଏତେବେଳଯାଏ ଘୋରିପୋରି ହେଇ ବସିଥିଲା । ଏ ବିପଦରେ ପଡ଼ି ତା' ଲାଜ କୁଆଡ଼େ ଗଲା । ସେ ମୁହଁରୁ ଓଢ଼ଣା କାଢ଼ି କହିଲା, ''ମଲା ମୋର । ଏଇ ଦଦରା ପାଲିଙ୍କିଟା ତେତେ ମିଳିଥିଲା । ଏବେ କ'ଣ କରିବୁ କର୍ । ମୁଁ ଯାଉଚି, ତୁ' ଥା' ।'' ଫକୀରା ତ ବାୟା । କନିଆ କଥା ଶୁଣି କହିଲା, ''କିଲୋ କୁଆଡ଼େ ଯିବୁ, ମୁଁ ତେତେ ଏଇ ଛିଣିକା ବା' ହେଲି, ହାତରେ ପଇଲା, ତୁ ଚୂଆ ଭୁଆସୁଣୀଟା ତୁ ମୋ' ହାତ ମୁଠାରୁ ପଳେଇବୁ ? ଦେଖରେ ମଉସା ! ଆରେ କଣ୍ଢୁରି ମଉସା ଦେଖିଲୁ, ଏ କନିଆର ଡଙ୍ଗଡାଙ୍ଗ ! ଗଉଡ଼ କଣ୍ଢୁରିଆ କହିଲା, ''ହଁରେ ପୁଅ ଏକାଳ ମାଇପଙ୍କୁ ପାରିବ କିଏ ! ଆଚ୍ଛା ଦି'ପାହାର ଥୋ ! ମାଡ଼କୁ ମାହାଦେବ ଡରେ ! କିବା ଛାର ଟୋକୀଟା !'' ରତନୀ ତା' କଥା ଶୁଣି କହିଲା କୋଉଠି ଥିଲୁରେ ମୁଣ୍ଡପୋଡ଼ା ନିଆଁ ନଗାଟା ! ମେତେ କହୁଚି ଫେଣେ ମାର୍, ମୁଁ ତୋ' ଖପୁରୀ ଉଡ଼େଇ ଦେବି ନାହିଁ । ଖଡୁମୂଷା ଦେଖିଚୁ !'' କଣ୍ଢୁରିଆ କହିଲା, ''ଆମେ କିଆଁ କହିବୁ ଲୋ ! ତମ ଭଲକୁ କହୁଥାଇ ! ରହ ବା ଯା' ତେତେ ଯେ ବା' ହେଇଚି ସେ ଜାଣେ । ଏବେ ଆମ ମୂଲ ଦେଇ ପକାଅ । ଗିରସ୍ତ ଭାରିଯା

ଯେଉଠି ଇଚ୍ଛା ସେଠିକି ଯାଅ ! ଦିଅ ଆମକୁ ଯା' ଚୁକୁତି କରିଥିଲ ।'' ଆଉ ଗଉଡ଼ଟା କହିଲା, ''ତମ ପାଲିଙ୍କି ଭାଙ୍ଗିଲା, ଆମର ସେଥେରେ ଯାଏ କେତେ, ଆସେ କେତେ ? ଆମକୁ ଦି'ଟଙ୍କା ଜବାବ କରିଚ, ଦି'ଟଙ୍କା ଦିଅ । ଆମେ ଭଲରେ ଘରକୁ ଯାଉ । ମଣିଷ କି ହଟହଟାରେ ପଇଲାରେ । ମୁଁ ଏତେ ବାହାଘରେ ବରଯାତ୍ରୀରେ ଯାଇଚି, ହେଲେ ଏମିତି ଦଦରା ପାଲିଙ୍କି କେବେ ମୋ' ବୋପାକାଳେ ଦେଖିନାହିଁ । ଆଉ ଜଣେ କହିଲା, ହଁରେ ମଧୁଭାଇ ଯାହା କହିଲୁଟି ସତ, ଆମ ମୂଲ ଘିନି ଆମେ ଯିବା ।''

ଫକୀରା କହିଲା ବା' ବେଶ୍ କଥାଟି । ତୋ କଥାଟି ତେତେ ସୁନ୍ଦର ମୋ ମଥାଟା ମେତେ ସୁନ୍ଦର । ଆରେ ଆମେ ଘରେ ପହଞ୍ଚି ମୂଲ ଦବୁଁ । ଟଙ୍କା କ'ଣ ଗଛରେ ଫଳୁଛି ତମକୁ ଦମୁଁ । ଖଣ୍ଡେ ବାଟ ଯାଇଁ ନାଁ ପାଲିଙ୍କି ଭାଙ୍ଗିଲା । ସଉରିଆ କହିଲା ଆମେ ପାଲିଙ୍କି ଭାଙ୍ଗିଲୁ ? ଗିରସ୍ତ ଭାରିଯା ଦି'ଟାଯାକ ଗୋଟାଏ ପାଲିଙ୍କିରେ ପଶିଲ, ବେଶି ଖରଚ ହବ ବୋଲି । ଦଦରା ପାଲିକିଟା କୋଉଠୁ ମାଗି ଆଣିଥିଲ ! ଏବେ ଆମ ଦୋଷ ହେଲା । ତେମେ ଚଢ଼ିଲ, ଆମେ କାନ୍ଧେଇଲୁ ! ମୋଟ ହେଇଚ ଯେ ମଲେ ବିଲୁଆ ଛ'ମାସରେ ଖାଇବ ।'' ଏଥର ରତନୀ କହିଲା – ମଲା, କି କଥା କହୁଚୁରେ, ଆମ ଗୋଡ଼ରେ କ'ଣ ପଟି ବନ୍ଧା ହେଇଚି ନାଁ ବେଡ଼ି ପଡ଼ିଚି । ମୁଁ ତ ଏଇ ରାତିକା ରାତି ଦଶ କୋଶ ଚାଲିଯିବି । ଆମକୁ ମାରିବୁ କିଆଁ କହୁଚୁ । ତୁ ମରୁନୁଁ । ଫକୀରା କହିଲା, ''ହଉ ତେବେ ଚାଲ୍, ଆଉ ବସିବା କିଆଁ ?'' ରତନୀ କହିଲା ''ଏମାନେ ଯେ ମୂଲ ମାଗୁଛନ୍ତି ?''

ଫକୀରା, କହିଲା ହଉ ହଉ ତମକୁ ଦିଆଯିବ । ସେହି ଭଙ୍ଗା ପାଲିଙ୍କିଟା ବହି ନିଅ । ଗଉଡ଼ତକ ପାଲିଙ୍କି ଆଗେ ଆଗେ ଗଲେ । ବର କନିଆ ଗଲେ ପଛେ ପଛେ, ବାଟ ପାଏ ଖଣ୍ଡେ ଯାଇଛନ୍ତି, ''ଫକୀରା କହିଲା, ମେତେ ବଡ଼ ମଇଦାନ ମାଡ଼ିଲାଣି । ତୁ ଏଇଠି ଠିଆ ହ' କି ମୁଁ ଆଉଚି ।'' ଆଉଚି ବୋଲି ଅଧଘଣ୍ଟା । ରତନୀ ରାଗରେ ଜଳି ପୋଡ଼ି ଅନ୍ଧାରରେ ଠିଆ ହେଇଥାଏ । ଆସିଲା ମାତ୍ରେ କହିଲା, ''ଏତେବେଳଯାଏ କୁଆଡ଼େ ମରିବାକୁ ଗଲୁ ?'' ''ଫକୀରା କହିଲା, ''ହଇଲୋ ଅରିଖିତିଆଣୀ ଜାଣୁନୁଁ ପାଣି ଖୋଜୁଥିଲି ।'' ରତନୀ କହିଲା, ''ମଲା ତୋ' ପେଇଁ ବଣପରବତରେ କିଏ କୂଅ ଖୋଳିଚି କି ? ନିଆଁ ନଗାଟାକୁ ଏତିକି ବେଳେ ମଇଦାନ ମାଡ଼ିଲା । ନିଦରେ ମଣିଷର ଦିହ କ'ଣ ହେଲାଣି । ଏ ମେତେ ରାତି ରାତି ଯାକ ଚଲେଇବ ଦେଖୁଚି ।'' ''ଫକୀରା କହିଲା, ଚିଡ଼ିଲୁ କିଲୋ ! ହଉ ନିଦ ମାଡୁଛି ତ ଏଇନେ କାନି ପାରି ଦେଲି ଶୋ' । ଘଣ୍ଟାକ ପରେ ଯିବା, ଆମ ଗାଁ ତ ହେଇ ଦୁଉଛି । ରତନୀ କହିଲା ''ହଇରେ ହୁଣ୍ଡା ବଣରେ ବାଘଭାଲୁ, ଏଠି କୋଉ ନୋକଟା ଶୋଇବ ?

ଫକୀରା ବାଘ ଭାଲୁ ନାଁ ଶୁଣି ଅତର୍କ ହୋଇ ଗୋଟାଏ ଆମ୍ବ ଗଛରେ ଚଢ଼ିଗଲା । ରତନୀ ଦେଖି କାବା ! ଗଛ ଉପରୁ ଫକୀରା ଡାକୁଚି । ''ଆଇଲା କିଲୋ ଦେଖି ଦେଖି ମୋତେ ଯେମିତି ନ ଖାଏଚି । ମୁଁ ମୋ' ମାଁର ଏକଇର ବଳା ବିଶିକେଶନ !'' ରତନୀ ତାକୁ ଖୁବ୍ ଶୋଧି ଶୋଧି କହିଲା, ''ଓଲା, ତତେ ଏକା ବାଘ ଭାଲୁ ଖାଉଚି, ବଣରେ ରାତି ଅଧରେ ନାଚ କରୁଚି ମୁଣ୍ଡପୋଡ଼ାଟା ।'' ''ହଇଲୋ ଗାଳି ଦଉଚୁ'' କହି ଫକୀରା ତଳକୁ ଆସି ରତନୀ ପିଠି ଆଉଁସି

ଦେଇ କହିଲା, "ଚାଲ ଯିବା ।" ପୁଣି ଖଣ୍ଡେଦୂର ଚାଲିଲେ । ଫକୀରା ଗୋଡ଼ରେ ଗୋଟାଏ କଣ୍ଟା ପଶିଲା । ଏବେ ଉପାୟ କ'ଣ ? ଛୋଟେଇ ଛୋଟେଇ ବସି ପଡ଼ିଲା । "ଇଲୋ ମୋ'ଗୋଡ଼ ଗଲା ଲୋ" କହି ମାଟି ଉପରେ ଶୋଇ ପଡ଼ିଲା । ରତନୀକି କହିଲା ମତେ ଆଉଁସ୍ । ରତନୀ କହିଲା, "ତୋ ବେଲି, ତୋ ସୁଆଙ୍ଗ ରଖ୍ ଦେଇଥା । ମୁଁ ତତେ ଆଉଁସି ପାରିବି ନାହିଁ । ବାଟଯାକ ନାଟ କରୁଚି," କହି ଖଡ୍ଡୁମୁଷାରେ ପାହାରେ ପିଟିଲା । "ଇଲୋ ମାରି ପକାଇଲା ଲୋ, ଇଲୋ ମାରି ପକାଇଲା ଲୋ କହି ବାୟାଟା ତ ଭୂତପରି ଠିଆ ହେଲା । ପୁଣି ଚାଲିଲେ । ବାୟା ଛୋଟାଉ ଥାଏ, ବସୁଥାଏ, ଉଠୁଥାଏ, ଏଇମିତି ହଉ ହଉ ସକାଳ ପାଇଲା, ଗାଁ-ଗଣ୍ଡା ଦୁଶିଲା । ବାୟା ରତନୀକି କହିଲା, "ଦେଖ୍ ଗାଁ ଦୁଶିଲାଣି, ଶଶୁର, ମଳାଶୁର ବିଲରେ ଥିବେ, ମୁଣ୍ଡରେ ଓଢ଼ଣା ଟାଣ । ନଇଲେ କହିବେ, ବଡ଼ ଅଲାଜୁକ ଘର ଝିଅ ! ତାକୁ ନିଆଜ ସରମ ଅଛି, ନାଁ ତାର ଢଙ୍ଗ ଢପ ଅଛି । ଆଲୋ ମାଧିଆ ମା' ମୁଣ୍ଡରେ ଓଢ଼ଣା ଟାଣ ।" ରତନୀ ଏ କଥାର ଭାରି ଚିଡ଼ି ଉଠିଲା । ରାତିଯାକ ତ ଯୋଉ ନାଟ ସୁଆଙ୍ଗ ହେଲାଣି । ସେ ବି କହିଲା, "ମଲା ତୋ ନିଆଁ ନଗା ଶଶୁର ମଳାଶୁରକୁ ମୁଁ କିଆଁ ଡରିବି ।" ଫକୀରା ପାଟିକରି କହିଲା, "ହଁ ଅଲବତ୍ ଡରିବୁ, ମୋ' ଶଶୁର ମଳାଶୁରକୁ ଡରିବୁଁନୁ !" ବାଟରେ ମାଇକିନାଁ ପଞ୍ଚାଏ ଗାଧୋଇ ଯାଉଥିଲେ, ଫକୀରା ତାଙ୍କ କତିକି ଦଉଡ଼ିଗଲା । ଡାକି ଡାକି କହିଲା "ଆଲୋ ମାଉସୀ, ଆଲୋ ଅପା, ଶୁଣ ଲୋ ମୋ' ବୋହୂଟା ନୂଆ ଭୁଆସୁଣୀଟା କହୁଛି ଶଶୁର ମଳାଶୁରଙ୍କୁ ଗୋଇଠା ମାରିବ, ତମେ ନିଶାପ କର ।" ମାଇପେ ତ କାବା ! ଦଣ୍ଡେ ଫକୀରାକୁ ଅନଉଥାନ୍ତି, ଦଣ୍ଡେ ରତନୀକି ଅନଉଥାନ୍ତି । ଶେଷକୁ ବୁଢ଼ୀଟିଏ କହିଲା, "ହଇରେ ପୁଅ ଏ କିଏ ?" ଫକୀରା କହିଲା, "ତେମେ ଚିହ୍ନିନ ?" ଏ ପରା ମୋ' ଶାଶୁ ଶଶୁର ଝିଅ ! ଏ ପରା ମୋ'ବୋପାର ବୋହୂ, ଏ ପରା ମୋ ଭାରିଯା ସାଆନ୍ତାଣୀ, ନଅତୁଣ୍ଡୀ ।" ବୁଢ଼ୀଟା ଖପା ହେଇ କହିଲା, "ତୁ ବାୟାଟା କିରେ ! ଯା' ଯା' ତୋ' ବାଟରେ ଯା" । ସେମାନେ ଗଲେ ଗାଧୋଇ । ୟାଙ୍କ କାଣ୍ଡ ଦେଖିକି ତାଙ୍କ ଭିତରୁ ଟୋକୀଗୁଡ଼ିକ ହସି ହସି ନୋଡରା କୋଡରୀ ହେଉଥାନ୍ତି ।

ରତନୀ ଚିଡ଼ି ଭିଡ଼ି ହଉଥାଏ, ଫକୀରା କିଆଁ ମାନିବ, ତାକୁ ନେଇ ସେ ଗାଁ ବଡ଼ ଦାଣ୍ଡର ଗୋଟାଏ କୋଠା କତିରେ ଆଣି ଛିଡ଼ା କଲା । କହିଲା ଏଇ ମୋ' ଘର । ରତନୀ ଦେଖିଲା ସତକୁ ସତ ଭଙ୍ଗା ପାଲିକିଟା ଆଣି ଗଉଡ଼ମାନେ ସେଇଠି ଛିଡ଼ା ହେଇଚନ୍ତି । କୋଠାର ଏଇଟା ପଛପଟ । ଗୋଟାଏ ସାନ ଦୁଆର ଥାଏ । ବାୟା ତାକୁ ସେଇଠି ଠିଆ କରି ଦେଇ କହିଲା ଈଶ୍ୱର ମା' ତତେ ଆସି ଘିନିଯିବ ତୁ ଏଇଠି ଠିଆ ହେଇଥା, ମୁଁ ବଜାରରୁ ଆସେ । ଏଇକ୍ଷଣି ଆସିବ ନେଇ ଢକ୍କଖିଆ, ୟା କହି ଗଲା । ଈଶରା ମା' ଆସିବ ବୋଲି ରତନୀ ଠିଆ ହେଇଛି, ଈଶରା ମା' ନା ଫିସରା ମା । କାହାରି ଦେଖା ଦରଶନ ନାହିଁ । ଫକୀରା ବି ଫେରି ନାହିଁ । ତାକୁ ବଡ଼ ବିରକ୍ତ ଲାଗିଲା । ସେ ଗୋଟାଏ ଗଉଡ଼କୁ ପଚାରିଲା, ହଇହେ ମଉସା ଏ ଘର କାହାର ?"

ଗଉଡ଼ କହିଲା, "ଏଇଟା ବାବୁ ସାଆନ୍ତଙ୍କ ଘର ।" ରତନୀ ବୁଝିପାରି ତୁନୀ ହେଲା । ତା' ଇଚ୍ଛା ଥିଲା କାହାକୁ ଡାକନ୍ତା, ବାବୁ ସାଆନ୍ତେ ନାଁ ଶୁଣି ଟିକେ ଭୟ ହେଲା । ଆଉ ବା ଡାକିବ କାହାକୁ ? କେହି ତ କୁଆଡ଼େ ଦେଖାନାହିଁ । ଖାଲି ଗଉଡ଼ ଚାରିଟା ଆଉ ସେ ଏକାଟିଆ । ଗଉଡ଼

ଭିତରୁ ଜଣେ ଦୟାକରି ପଚାରିଲା, "ହଇଏ ! ତମକୁ ତ କେହି ଡାକୁନାହାନ୍ତି, କେତେ ଆଉ ଖରାରେ ଠିଆ ହବ, ଏ ପାଲିଙ୍କିଟା ପଡ଼ିଚି ବସିଥାଅ ।" ରତନୀ ଭାବିଲା ଗୋଡ଼ ଭାଙ୍ଗି ଛିଡ଼ାହବା ଅପେକ୍ଷା କଣରେ ଆଉଜି ବସିଲେ ଭଲ । ଆଖି ବୁଜିହେଇ ଆସୁଚି । ଯାଇ ପାଲିଙ୍କି ଭିତରେ ଆଉଜି ବସିଗଲା । ଟାହୁଁ ଟାହୁଁ ନିଦ ମାଡ଼ିଆଇଲା ।

ହଠାତ୍ ବଡ଼ ଗୋଳମାଳ ପାଟିରେ ତା' ନିଦ ଭାଙ୍ଗିଗଲା । ଛାତିଟା ଦାଉଁକିନା ହୋଇଗଲା । ରତନୀ ବାହାରକୁ ଅନେଇବ କ'ଣ ଦେଖିଲା, ଗୋଟାଏ ପାଞ୍ଚହାତ ଡେଙ୍ଗା ଧୋବଧାଉଳିଆ ମଣିଷ, ବେତ ଖଣ୍ଡେ ଧରି ଗଉଡ଼ଙ୍କୁ ପିଟିନାଗିଚି । ଗଉଡ଼ ବିକଳ ହେଇ ପାଟିକରି ତା'ଗୋଡ଼ତଳେ ପଡୁଛନ୍ତି, ହାତତଳେ ପଡୁଛନ୍ତି । "ସାଆନ୍ତେ ଆଉ ମାରନାଁ ଆଉ ପଇସା କଥା ମୁହଁରେ ଧରିବୁନୁଁ, ତମର ଶହେବରଷ ଗୋଲାମି ଖଟିବୁ । ତମ ଗୋଡ଼ ଧରୁଚୁ, ଦାନ୍ତରେ କୁଟା ହଉଚୁ ।" ସାଆନ୍ତେ କାହିଁକି ମାନିବେ ? କହିଲୋ, ପଇସା ମାଗୁଚ, ପଇସା ଧୋଇ ପାଣି ଦେବି, ମୋ'ରାଇଜରେ କହିଲ, ସୁଖରେ ଘର କଲ, ବୋଲବାଣୀଟା କରିଦେଲ ପୁଣି ପଇସା ମାଗୁଚ ।" ଯା କହି ତାଙ୍କୁ ଗୋଡ଼େଇ ଗୋଡ଼େଇ ପିଟିଲେ । ତାଙ୍କ ମାଡ଼ ଦେଖି ରତନୀର ହଲକ ଶୁଖିଗଲା । ସେ ପାଲିକି କଣରେ ଯାକିଯୁକି ହେଇ ବସିଲା; କିନ୍ତୁ କ'ଣ ହବ ? ସାଆନ୍ତ ତାକୁ ଦେଖିସାଇଲେଣି । ଘଡ଼ିଏ ବେଳ କଟମଟେଇ ଅନେଇ କହିଲେ, "ତୁ କିଏ ?" ରତନୀ କହିଲା, "ମୁଁ – ମୁଁ ରତନୀ ।" ଏଠିକି କେମିତି ଆଇଲୁ ? ରତନୀ କହିବ କ'ଣ ଘଡ଼ିଏ ଭାବି କହିଲା ସାଆନ୍ତଙ୍କ ବେହେରା ଫକୀରା ସ୍ୱାଇଁ ମୋତେ ଆଣିଛି ।" ସାଆନ୍ତ କାବା ହେଇ କହିଲେ, "ଏଠି ତ ମୋ' ବେହେରା ଫକୀରି ସ୍ୱାଇଁ କେହି ନାହିଁ ।" ରତନୀ ବୁଦ୍ଧିକରି କହିଲା, "ଲୋକି ମାହାରଣାଙ୍କୁ କହିଲେ ଜାଣିବେ, ସେ ମୋ' ଧରମଭାଇ ।" ସାଆନ୍ତେ ପୁଣି କହିଲେ, "ଏଠି ତ ଲୋକି ମହାରଣା କେହି ନାହିଁ ।" ଏଥର ରତନୀ ଆଉ କାହା ନାଁ କହିବ, କହିଲା, ଇଶରା ମା' ଜାଣେ । "ସାଆନ୍ତେ କହିଲେ, "ଇଶରା ମା' କିଏ ? ଆଉ ଏ କଥାକୁ ରତନୀ ଜବାବ ନ ଦେଇ ତୂନୀ ହେଲା । ଫକୀରା ଉପରେ ତା' ହାଡ଼' କଡ଼କଡ଼ ତାକୁଥାଏ । ଆସୁ ଆସିଲେସିନା ତା' ମଜା ବୁଝିବ ? ସାଆନ୍ତେ ତା'ଠୁ କଥାର ଉତ୍ତର ନ ପାଇ ଘର ଭିତରକୁ ଗଲେ । ଦଣ୍ଡେ ଛାଡ଼ି ଆଇଲା ଗୋଟାଏ ମାଇପି ଲୋକ । ରତନୀ ଭାରି ଖୁସି ହେଇଗଲା । ଭାବିଲା ଇଶରା ମା' ଆଇଛି, ଏଥର ତାକୁ ଘରକୁ ନେବ । ମାଇପି ଲୋକଟି ସିଧା ପାଲିଙ୍କି କତିକି ଆଇଲା, କହିଲା, "ଝିଅଲୋ କାହୁଁ ଅଇଲୁ ? ରତନୀର ମହାରାଗ ହେଲା । କହିଲା କିଛି ଜାଣିନାହିଁ ଯେମିତି, କହିଲା କାହୁଁ ଅଇଲୁ, ନଙ୍କାରୁ ଆଇଲି ।" ତା' କଥା ଶୁଣି ସେ ତ ମାର୍ ମୁସ୍କିଲ୍ । କହିଲା କଥାପଦକୁ କାମୁଡ଼ି ଗୋଡ଼ଉଚ । ଘରେ ନ ପଶୁଣୁ ଚାଲ ବାଜିଲାଣି । ଏ ପୁଣି କି ଘର କରିବ ? ତା'ପାଟିରେ ଆଉ ଗୋଟାଏ ମାଇକିନା ଭିତରୁ ବାହାରିପଡ଼ି କହିଲା, ହଇଲୋ ଧଡ଼ିଆବୋହୂ କାହାସଙ୍ଗେ ନଢୁଚୁ ? ଧଡ଼ିଆବୋହୂ ସେତେବେଳକୁ ଅଗ୍ନିମୂର୍ତ୍ତି ! ସେ ତାକୁ ବି ଶୋଧିଦେଲା । ରତନୀ ପାଲିଙ୍କି ଭିତରୁ ବାହାରିପଡ଼ି କହିଲା, ଦେଖିଲୁ ମାଉସୀ, ତୁଣ୍ଟେଇଟାକୁ ମୋ' ସଙ୍ଗେ ନଗେଇଚି । ମୁଁ ଭଲା ତାକୁ କିଛି କହିଥାନ୍ତି । ମୁଁ ପଚାରିଲି ତୁ ଇଶରା ମାଁ କି ?" ଆରଜଣ ଥାଇ କହିଲା, "ମୁଁ ଇଶରା ମା' । ତୁ ଫକୀରା ବୋହୂ କିଲୋ ଆ' ଆ' ଘର ଭିତରକୁ ଆ', ମତେ ଫକୀରା କୋଉକାକୁ

କହିଲାଣିଟି । ଏ ନିଆଁନଗା ମନକୁ କ'ଣ କହିବଟି । ଟୋକାଟା ଏଇକ୍ଷଣି ବଜାରରୁ ଆସିବ । ଆଉ ତୁ ବାହାରେ ବଇଚୁ । ହଇଲୋ ତୋ' ପାଟିରେ କ'ଣ ବେଙ୍ଗ ବନ୍ଧା ହୋଇଥିଲା । ମତେ ଡାକଟାଏ ଦେଲୁନାହିଁ । ଆ' ଆ' ।''

ରତନୀ ଆଶ୍ରାପାଇ ବଡ଼ ଖୁସିରେ ଘର ଭିତରକୁ ଗଲା । ଦେଖିଲା, ଖଟ ପଡ଼ିଛି, ମେଜ ଥୁଆ ହେଇଚି, ଚଉକି ସଜା ହେଇଚି, କାନ୍ଥରେ ମାଳ ଅଇନା ଆଉ ଚିତ୍ର । ଖଟରେ ଶୋଇଛନ୍ତି ସାଆନ୍ତେ । ଟୋକାଟିଏ ଗୋଡ଼ ଘଷୁଚି । ଈଶରା ମା' ଘରକୁ ପଶିଯିବ କ'ଣ ତା ମୁଣ୍ଡ ବାଜି କାଚର ଗୋଟାଏ ବଡ଼ ଅଇନା ଧୁମ୍‌କିନା ତଳେ ପଡ଼ି ଚୂନଭୂତ । ସାଆନ୍ତଙ୍କର ତ ନିଦ ଲାଗିଆସୁଥିଲା । ଏ ଶବଦରେ ଉଠିପଡ଼ି ଦି'ଚାପୁଡ଼ା ଦେଲେ ଭଣ୍ଡାରୀ ଟୋକାକୁ, ସେଠୁ ଦି' ଦି' ବେତ ଦେଲେ ଏ ତିନିଜଣଙ୍କୁ । ହଠାତ୍ ଘରେ ପଶି ଅକାରଣେ ମାଡ଼ଖାଇ ରତନୀର ରାଗରେ ବୁଦ୍ଧି ହଜିଗଲା । ସେ ଆଉ ସମ୍ଭାଳି ନପାରି କହିଲା, ''ଏଇଟା କାହିଁକି ମତେ ମାଇଲା ଲୋ ! ଈଶରା ମା' ଆରଶୀ ଭାଙ୍ଗିଲା, ମୁଁ ଖାଇଲି ମାଡ଼ ।'' ସାଆନ୍ତେ ଭାରି ରାଗିଯାଇ କହିଲେ ବେଶି ବକ୍ ବକ୍ କରନା । ଏଠି ଚାକରାଣୀ ଯେମିତି ସାଆନ୍ତାଣୀ ସେମିତି, ଦୋଷ କଲେ ମାଡ଼, ସାଆନ୍ତାଣୀ ହେଇଚ ବୋଲି କଣ ମୁଣ୍ଡ କିଣିଚ ? ଉଠ ଯାଇ ଭଙ୍ଗା କାଚତକ ଗୋଟେଇ ଗଦା କର । ରତନୀ ଆଖିପୋଛି ଯାଇ କାଚତକ ଗୋଟେଇ ଗଦାକଲା । ବାବୁ ବାହାରକୁ ଚାଲିଗଲେ । ଭଣ୍ଡାରୀ ଟୋକାଟା ବି ଆସି ସାଙ୍ଗରେ ମିଶିଗଲା । କାଚ ଗୋଟଉ ଗୋଟଉ କହିଲା, ''ଦେଖିଲ ମା ସାଆନ୍ତାଣି, ସାଆନ୍ତେ ଆମର ଭାରି ଚିଡ଼ିଲ ମଣିଷ । ଯେମିତି ନଙ୍କାମରିଚ ଟିଏ ତ ! ତାଙ୍କ ସ୍ୱଭାବ ବୁଝି ଚଳିବ । ତେମେ ନୂଆ ଲୋକ ବୋଲି କହି ରଖିଲି ।'' ରତନୀ ସୁଯୋଗ ପାଇଁ ପଚାରିଲା, ''ହଇରେ ତୋ ନା କଣ ?'' ଟୋକା କହିଲା ମୋ ନା ଦାମା । ମୁଁ ବାବୁଙ୍କର ଗୋଡ଼ ଘଷେ, ପଙ୍ଖା ଟାଣେ, ବୋଲ ହାକ କରେ । ରତନୀ କହିଲା, ''ଆଉ ଫକୀରା କ'ଣ କରେ ?'' ଦାମା କହିଲା ଏଠି ତ ଫକୀରା ବୋଲି କେହି ନାହିଁ । ରତନୀକି ତ ଭାରି ଆଶ୍ଚର୍ଯ୍ୟ ଲାଗିଲା । ସେତେବେଳକୁ ଈଶରା ମା' ଆସି ଡାକିଲା, ଆ'ଲୋ ବୋହୂ ଗାଧେଇବୁ । ରତନୀ ଉଠିକରି ଗଲା । ଈଶରା ମା' ତାକୁ ନେଇ ପୋଖରୀ ତୁଠରେ ବସିଲା । ମୁଣ୍ଡାଏ ସାବିନି, ଗିନାଏ ବାସନା ତେଲ ଧରି ବସିଥାଏ । ଅଇନା ପାନିଆ ସବୁ ଆଣିଥାଏ ।

ପୋଖରୀ ତୁଠରେ ଭାରି ନିର୍ଜନ, ଚାରିଆଡ଼େ ପାଚେରୀ ବନ୍ଧା । ପକ୍‌କା ବେଦୀ, ତୁଳସୀ ଚଉରା, ବାଡ଼ିଟା ଭାରି ସୁନ୍ଦର, ଫୁଲଗଛ ମାଳମାଳ, ନଡ଼ିଆ ଗଛ, ଆମ୍ବ ଗଛ, କଦଳୀଗଛ ପଣସଗଛ ମାଳ ମାଳ । ରତନୀ ଏ ସବୁ ଦେଖି ତା' ଆଖି ଖୋସି ହୋଇଗଲା ।

ଈଶରା ମା' ଟିକେ କଡ଼ାସ୍ୱରରେ କହିଲା, କ'ଣ ବଲବଲ କରି ଅନଉଚୁ । ଘର ବାରି କଣ କେବେ ଦେଖିନୁଁ । ତୋରି ସାଆନ୍ତର ତ । ଏଠି ରାଣୀ ହେଇ ରହିବୁ । ଭଲ ଗୁଣ କଲେ କପୂର ଚୂରିବୁ । ଆମେ ତ ଚାକରବାକର ଲୋକ । ''ରତନୀ ଟାଣିହେଇ କହିଲା, ''ମୋର କ'ଣ ମନ୍ଦଗୁଣ ଦେଖିଲୁ କି ?'' ଈଶରା ମା କହିଲା, ''ସାଆନ୍ତେ କହୁଥିଲେ, ତୁ କୁଆଡ଼େ ପକ୍‌କା କଳିଆଖୋରଣୀଟା ।'' ଆପଣା ନିନ୍ଦା ଶୁଣି ରତନୀ ଖପା ହେଇ କହିଲା, ''ମୁଁ ପକ୍‌କା କଳିଆଖୋରଣୀ ଆଉ ତୋ' ସାଆନ୍ତଟା ଭାରି ଭଲ । ସେଇଟା କିଆଁ ମୋ' ସାଙ୍ଗେକ ନାଗିଚି ?

ମତେ ସକାଳୁ ଦି' ପାହାର ବାଡ଼େଇଲାଣି । ହଇଲୋ ତେମେସବୁ ଏଠି କେମିତି ଚଳ ?'' ଈଶରା ମା' ବଡ଼ ଦୁଃଖରେ କହିଲା, ''ମାଡ଼ ଗାଳି ଖାଇ ଚଳୁ । ମାଡ଼ ଖାଇ ଖାଇ ହାଡ଼ ଭାଙ୍ଗିଲା । ସାଆନ୍ତେ ଭାରି ପ୍ରତାପୀ; ଏବେ ତମ ହାତରେ ଆମ ଚୁଟି । ମାଇଲେ ଧଇଲେ ଯିବୁଁ ଆଉ କୁଆଡ଼ିକି ? ଜମି ଧରିଚୁ ।'' ଯା କହି ଟାଣିନେଇ ରତନୀକି ତଳେ ବସେଇଲା । ପିତଳ ଖଡୁତକ ତାର ବଡ଼ ହୁଗୁଳା ତିଆରି ହେଇଥାଏ । ହାତରେ ସୂତା ପଟେ ବାନ୍ଧି ଗୋଟି ଗୋଟି ସବୁ କାଢ଼ିଲା । ରତନୀ ତା' କାଣ୍ଡ ଦେଖି କହିଲା, ''ମତେ ଛାଡ଼, ଏ ରଙ୍ଗ ରଖିଦେ, ମତେ ରାଣ୍ଡ କରିବୁ କିଲୋ ? କାଲି ବାହା ହେଇଚି ।'' କଥା ଶୁଣି ଈଶରା ମା' ହସି ହସି କହିଲା, ଆଲୋ ଅଲଖେଣୀ ଘର ଝିଅ, ହେଇ ଦେଖ୍ । ଆଉ ଗୋଟାଏ ପେଡ଼ି ଫିଟେଇ ଆଗକୁ ଥୋଇଦେଲା । ରତନୀର ତ ଆଖି ବୁଜି ହେଇଗଲା । ଈଶରା ମା' ଦେହ ଦୁଲୁକେଇ କହିଲା, ''ପିତଳ ଖଡୁ ପିନ୍ଧିକବାଦିନ ଗଲା । ତୋ' ଭାଗ୍ୟରେ ତ ଅଛି ସୁନା, ହୀରା, ନୀଳା, ତୁ ପିନ୍ଧିବୁ କିଆଁ ପିତଳ କଂସା ? ରତନୀ ଆଉ କିଛି କହିଲା ନାହିଁ । ଥିରିହୋଇ ଗାଧେଇଗଲା ।

ପ୍ରାୟ ଦି' ଘଣ୍ଟାକାଳ ବୁଢ଼ୀ ତାକୁ ମାଜି ଘଷି ଗାଧେଇ ଦେଇ ଆଣି ସବୁ ଅଳଙ୍କାରରେ ସଜବାଜ କରେଇ ପାଟଲୁଗା ପିନ୍ଧେଇ ଅଇନାଟି ଆଣି ତା' ହାତରେ ଦେଲା । ରତନୀ ଅଇନାରେ ନିଜ ମୁହଁ ଦେଖି ଲାଜରେ ମରିଗଲା, ସେ କଣ ଆଉ ସେ ରତନୀ ଅଛି ? ଏବେ ରୂପଟି ଦୁଶିଲା ପରୀ ଦେରେ । ଈଶରା ମା' ବୁଢ଼ୀ ତାକୁ ସେଠୁ ନେଇ ରୋଷେଇଶାଳକୁ ଗଲା ।

ରାଧି ମାଁ ବାହ୍ମଣୀଆଣି ଛ'ଭଜା ନ'ତୁଣ ପରଷି ଦେଲା । ତାକୁ ବି ଭାରି ଭୋକ କରୁଥିଲା । ଆଉ ଏଡ଼େ ବଢ଼ିଆ ଜିନିଷ ସେ କେବେ ଖାଇନଥିଲା, ଖାଇ ପିଇ ସାରିଲାରୁ ଈଶରା ମାଁ ନେଇ ତାକୁ ପଲଙ୍କରେ ବିଛଣା କରି ଶୁଆଇ ଦେଲା । ସେ ପୁଣି ହଁସୁଲୀତୂଳୀ ଭାରି ନରମ । ରାଣୀ ମା' ବସି ପଙ୍ଖା କଲା । ହୁରୁଷି ମା' ଆଣି ବାସନା ପାନ ଦେଲା ।

ଲୁଗା ଗହଣା ପିନ୍ଧି ଖାଇ ପିଇ ରତନୀ ଭାରି ତୋଷ । ତାକୁ ନିଦ ମାଡ଼ିଆଇଲା । ଯେତେବେଳେ ତା' ନିଦ ଭାଙ୍ଗିଲା ସେତେବେଳକୁ ମୁହଁସଞ୍ଜ । ଘରେ କେହି ନାହାନ୍ତି, ସାଆନ୍ତେ ଆସି ତା' ଖଟରେ ବଇଚନ୍ତି । ରତନୀ ତାଙ୍କୁ ଦେଖିଲା ମାତ୍ରେ ଧଡ଼ପଡ଼ ଖଟରୁ ଉଠି ପଇଲା ।

ସାଆନ୍ତେ ତାକୁ ଏକଦୃଷ୍ଟିରେ ଅନେଇ ଅନେଇ କହିଲେ, ''ଏ ଗହଣା ଲୁଗା କିଏ ଦେଲା ?'' ରତନୀ କହିଲା ଈଶରା ମା' । ସେହିକ୍ଷଣି ଈଶରା ମାକୁ ଡାକ ପଇଲା, ସାଆନ୍ତେ ରାଗିଯାଇ କହିଲେ, ଈଶରା ମା' ତୋତେ କିଏ କହିଲା ୟାକୁ ଆଜି ଅଳଙ୍କାରରେ ସଜ କରିବାକୁ ? ଈଶରା ମା' ନିଉନ ହୋଇ କହିଲା, ''ସାଆନ୍ତେ ଅପଣ ଆଜ୍ଞା କରିଥିଲେ ।'' ସାଆନ୍ତେ କହିଲେ ଆଉ ମୁଁ ହୁକୁମ ଦଉଚି ୟାଙ୍କର ସବୁ ଗହଣା କାଢ଼ିଦିଅ, ପଟେ ପଟେ ଶଙ୍ଖା, ଆଉ ଖଦି ଖଣ୍ଡେ ପିନ୍ଧେଇ ଛାଡ଼ିଦିଅ । ୟାକୁ ଏଗୁଡ଼ା ମାନୁନାହିଁ । ଯାହାକୁ ଯେମିତି । ଯାହା, ଦିହକୁ ଖଦି ମାନିବ ତା' ଦିହରେ ପୁଣି ବିଶାଏ ଅଳଙ୍କାର ।'' ହଉ ଆଜ୍ଞା କହି ସେହିକ୍ଷଣି ତିନିଟା ଚାକିରାଣୀ ମିଶି ତା' ଗହଣାତକ କାଢ଼ିଦେଲେ । ରତନୀକି ଭାରି ଲାଜ ବି ମାଡ଼ିଲା, ଭାରି କାନ୍ଦବି ମାଡ଼ିଲା । ହେଲେ ସାଆନ୍ତେ କତିରେ ବସିଥିଲେ । ଭରସି କରି ପାଟି ଫିଟେଇ ପାରିଲା ନାହିଁ ।

୮୮

ସେତେବେଳକୁ ସଞ୍ଜ ବଳିତା ଲାଗିଲାଣି । ସାଆନ୍ତେ ରତନୀକି ଚାହିଁ କହିଲେ, "ଆଜି ତୁମେ ମୋ ପାଇଁ ରାନ୍ଧ ।" ଯା କହି ବାହାରକୁ ଗଲେ । ତାଙ୍କ ଗଲା ପରେ ଚିନ୍ତା ମା' କହିଲା, "ଆଚ୍ଛା ମନିଷଟି, ତୁଆଏ ପିନ୍ଧି, ତୁଆଏ କାଢ଼ । ଗହଣା ଦବାକୁ କିଏ କହିଲା, କାଢ଼ିବାକୁ କିଏ କହିଲା । ଗରିବ ଘର ଝିଅ ତ ଜାଣିଶୁଣି ବାହାହେଲ । ଏବେ ତାକୁ ଏତେ ଦୁଃଖ ଦେଲେ ଚଳିବ ?" ତା' କଥା ଶୁଣି ରତନୀ ଆଖିରୁ ଟପ୍ ଟପ୍ ଲୁହ ଗଡ଼ିଗଲା । ଘଣ୍ଟାକ ଆଗର ଗହଣା ପିନ୍ଧି ଯୋଉ ସୁଖ, ଶୂନ୍ୟରେ ମିଶିଗଲା । ଆଉ ତା'ର ଭାବନାର ବେଳ ନଥିଲା । ବଡ଼ ବଡ଼ କଣ୍ଢନ ଥାଳିରେ କି ଜାଣି ପଚିଶି ଲୋକର ରାନ୍ଧିବା ଦରବ ଘିନି ଚାରିଟା ପୂଝାରୀ ଆସି ହାଜର । ରତନୀକି ହୁକୁମ ହେଇଛି ରାନ୍ଧିବ ବୋଲି । ତା'ଛାତି ଥର ଥର । ସେ କି ରନ୍ଧା ଜାଣେ ?କ ଯା ହଉ ରନ୍ଧାଘରକୁ ଗଲା । ଜିନିଷପତ୍ର ଥୋଇଦେଇ ପୂଝାରୀ ବାହାରିଗଲା । ରତନୀ ବୁଦ୍ଧି କରି ଚୁଲୀ ଜଳେଇଲା, ଭାତ ଫୁଟେଇଲା । ଶାଗଟା ଖରଡ଼ିଲା, ଡାଲିଟା କଲା । ବଡ଼ ମାଛକୁ ବେସର କରିଦେଲା । ଆଉ ତ କିଛି ଜାଣି ନାହିଁ । ପୁଣି ଭାବିଚିନ୍ତି ସନ୍ତୁଳାଟା କଲା । ଆଉ ସବୁ ଜିନିଷ ପଡ଼ିଥାଏ । ସେ କି ଜାଣେ ଖିରିମୋହନଭୋଗ, ଆଉ କାଳିଆ କୁରୁମା !

ରାତି ନଅଟାକୁ ବାବୁ ଆସି ପିଣ୍ଡାରେ ବସିଲେ । ରତନୀକି କହିଲେ; ଭାତ ବାଢ଼ । ତା'ହଲକ ଶୁଖିଗଲା । ଏଡ଼େ ବଡ଼ ଲୋକକୁ କେମିତି ଭାତ ଦବ ? କ'ଣ କରିବ ? କେହି ସାହାଯ୍ୟ କଲେ ନାହିଁ । କଷ୍ଟେ ମଷ୍ଟେ ଥାଳିରେ ଥାଳିଆରେ ଭାତ ତିଅଣ ପରଷିଲା । ସାଆନ୍ତେ ଖାଇ ବସିଲେ । କହିଲେ ଭାରି ସୁଆଦ ହେଇଚି । ରତନୀ ମନ କୁଣ୍ଢେ । ଡାକିଲେ, "ଆସ ଖାଇବ" । ରତନୀକି ଭାରି ଲାଜ ମାଡ଼ିଲା । ତୁନିହୋଇ ରହିଲା । ସାଆନ୍ତେ ପୁଣି ଡାକିଲେ, ନଶୁଣିଲାପରି ରାଗ ହେଇ ଉଠିଲେ । ଥାଳି, ଥାଳିଆ, ଗିଲାସ, ବାସନ, ଭାତ ତରକାରୀ ସବୁ ଫୋପାଡ଼ି ଦେଲେ । କହିଲେ, କଣ ମୋ' କଥା ଅମାନିଆ ।" ସାଆନ୍ତର କାଣ୍ଡ ଦେଖି ରତନୀର ଛାତିରୁ ଅଧେ ରକ୍ତ ଶୁଖିଗଲା । ସେହିକ୍ଷଣି ଈଶରା ମା'କୁ ଡକରା ହେଲା । ସାଆନ୍ତ ରାଗରେ ତମ ତମ ହୋଇ କହିଲେ, ଏ ମୋ' କଥା ଅମାନିଆ କରିଛି, ଯାକୁ ପଖାଳ ଭାତ ପିତାଶାଗ ଏହିକ୍ଷଣି ଆଣିଦିଅ ।" ସେହିକ୍ଷଣି ପଖାଳ ଭାତ ପିତା ଶାଗ ଖରଡ଼ା ଆସିଲା । ସାଆନ୍ତେ କହିଲେ, "ବସ୍ ଖାଇବାକୁ ।" ରତନୀ ଭୟରେ ଖାଇ ବସିଲା । ସାଆନ୍ତ କରେଇ କରେଇ ଭାତ ତାଟିଆକୁ ଅନେଇଁଥାନ୍ତି । ପୁଣି ରାଗରେ କହିଲେ "ହଇଲୋ ଈଶରା ମା', ହାଣ୍ଡିଏ ଗୋରୁ ତୋରାଣୀ ବାଢ଼ି ଦେଇନୁ । ଏତେ ଖାଇବ ସେ ! କାଢ଼୍ ଫୋପାଡ଼୍, ସେହିକ୍ଷଣି ଈଶରା-ମା ସବୁ ଅଜାଡ଼ିଦେଲା, ରହିଲା ଖାଲି ଖାମୁକାଏ ତୋରାଣୀ । ସାଆନ୍ତେ କହିଲେ, ଏଇ ତୋରାଣୀ, ଆଉ ପିତାଶାଗ, ମୋ କଥା ଅମାନିଆ କଲେ ଏଇ ଖାଉବାର ମିଳିବ । ରତନୀ ଲୁହ ପୋଛୁଥାଏ ଖାଉଥାଏ, ତା' କଇଁ କଇଁ ସ୍ୱର ଶୁଣି ସାଆନ୍ତେ ଝଟ୍ ତା ପିଠିରେ ବେତଟିଏ ବଜେଇଲେ । କହିଲେ, "କାନ୍ଦିଲେ ଏ ଏ ଶାସ୍ତି । ରତନୀ ତୁନିହୋଇ ସେତକ ଖାଇଲା ।

ଖାଇ ଉଠିଲାମାତ୍ରେ ସାଆନ୍ତେ ଗଲେ ଆର ପିଣ୍ଡାକୁ; ସେଠି ଚଟେଇ ସତରଞ୍ଜି ପଡ଼ିଲା । ହାରମୋନିୟମ୍ ସିତାର ଥୁଆଗଲା । ବାବୁ ବସିଲେ, ବାଜା ବଜେଇ ଗୋଟିଏ ଗୀତ ଗାଇଲେ ।

ତାଙ୍କ କଣ୍ଠ ଭାରି ମଧୁର । ରତନୀ ଶୁଣୁଥାଏ । ସାଆନ୍ତେ କହିଲେ, "ଆସ ବାଜା ବଜେଇବ ।" ଆଉ ସେ କିଛି ଉତ୍ତର ନଦେଇ କତିକି ଗଲା । ବାବୁ ତାକୁ ବାଜା ଶିଖେଇ ବସିଲେ । ସେ ବୁଝୁ ନ ବୁଝୁ ହୁଁ ହାଁ ମାରୁଥାଏ । ଘଣ୍ଟାଏ ଗଲା, ସାଆନ୍ତେ କହିଲେ ଚାଲ ଶୋଇବା । ଖରାଦିନ, ବଡ଼ ଗରମ, ପିଣ୍ଡାରେ ବିଛଣା ହେଲା । ଦିବ୍ୟସୁନ୍ଦର ବିଛଣା ଗଦୀ, ତୋଷକ, ଲେପ, ତକିଆ, ପୁଣି ମଲ୍ଲିଫୁଲ ମାଳ । ସାଆନ୍ତେ ଶୋଇଲେ । ଦଣ୍ଡେ ଯାଇନାହିଁ ସାପ ମାଇଲାପରି ଉଠିଲେ । ବିଛଣା ବଡ଼ କାଟିଲା । କଥା କଣ, ରାମା ବେହେରା, ଦାମା ବାରିକ ଦଉଡ଼ି ଆଇଲେ । ବାବୁ ସବୁ ବିଛଣା ଅଗଣାରେ ଫୋପାଡ଼ି ଦେଲେ । କଥା କଣ, ଖୋଜଖୋଜ ସାତ ପରସ୍ତ ଗଦୀତଳେ ଗୋଟାଏ ଖଡ଼ିକା । ଏଇଟା କାଟୁଥିଲା । ବାବୁ ଖଡ଼ିକାଟି ପାଇ ସେଇକ୍ଷଣି ଦି'ଚଟକଣା ବସେଇଲେ । କହିଲେ, ଆଣ ଖଜୁରୀପଟି । ତାଙ୍କ କଥାମତେ ଗୋଟିଏ ସାତଛିଣ୍ଡା ଖଜୁରୀଟି ଆସି ପଡ଼ିଲା । ପିଢ଼ା ଗୋଟିଏ ମୁଣ୍ଡତଳେ ଦେଇ ସାଆନ୍ତେ ଶୋଇଲେ । ରତନୀକି ଡାକିଲେ ଗୋଡ଼ଘଷି । ତାଙ୍କ କାଣ୍ଡ ଦେଖି ରତନୀର ପିଳେହୀ ପାଣି । କିଛି ଉତ୍ତର ନ ଦେଇ ଗଲା ଗୋଡ଼ ଚିପିଲା ।

ମୁଠାଏ ଦି'ମୁଠା ନ ଦଉଣୁ ସାଆନ୍ତେ ଏମିତି ଗୋଇଠାଟିଏ ଦେଲେ ଯେ ଛାଟିହେଇ ଖଣ୍ଡେ ଦୂରରେ ପଡ଼ିଲା । 'ଆଲୋ ବୋପାଲୋ' ହୋଇ କାନ୍ଦି ଉଠିଲା ସତେ ଯେମିତି କିଛି ଜାଣି ନାହାନ୍ତି, ସାଆନ୍ତେ ଧଡ଼ପଡ଼ ଉଠିଯାଇ କଅଁଳେଇ କହିଲେ, "ଆହା କାଟିଲା କିଅ ! ହଉ ଆସ, ଘଷା ଥାଉ, ଶୋଇ ପଡ଼, ରାତି ବାରଟା ହେଲାଣି ଭୟରେ ଭୟରେ ରତନୀ ଗୋଟାଏ କୋଣରେ ଶୋଇଥାଏ । ତା' ଆଖିକି ନିଦ ନାହିଁ । ସାତପାଞ୍ଚ ଭାବୁଥାଏ । ମା' କଥା ମନେ ପକେଇ ଆଖିରୁ ଲୁହ ଗଡ଼ି ଯାଉଥାଏ । ଲୋକାଭାଇର ଛଳକଥା ଚିନ୍ତି ତା'ବୁକୁ ଫାଟି ପଡୁଥାଏ । ଏ କ'ଣ ହେଲା, କୁଆଡ଼େ ଥିଲା । କୁଆଡ଼ିକି ଆଇଲା । ଫକୀରା କିଏ, ଏ ସାଆନ୍ତେ କିଏ, ଏମାନେ ଯାକୁ ନେଇ ଏତେ ରଙ୍ଗ କିଆଁ କରୁଛନ୍ତି କିଛି ବୁଝିପାରିଲା ନାହିଁ । ଉଠିବସି ସୁଉଁ ସୁଉଁ ହେଇ ଅନେକବେଳ କାନ୍ଦିଲା । ତା' ସୁଉଁ ସୁଉଁରେ ସାଆନ୍ତଙ୍କର ନିଦ ଭାଙ୍ଗିଲା । ବିରକ୍ତ ହେଇ କହିଲେ କଣ ରାତି ଗୋଟାକ ଶୁଆଇ ଦବ ନାହିଁ, କହ ! କାହିଁକି କାନ୍ଦୁଛ ?" ଏତର ରତନୀ ସମ୍ଭାଳି ନପାରି ଆହୁରି ବଡ଼ ପାଟି କରି କାନ୍ଦି ଉଠିଲା । ସାଆନ୍ତ ତାର କତିକି ଯାଇ ଠିଆହେଇ କହିଲେ, "କଅଣ କାହିଁକି କାନ୍ଦୁଛ ମତେ କୁହ । ଆପଣା ସ୍ୱାମୀକି ନ କହିବ ତ ଆଉ ଦୁଃଖ କଥା କହିବ କାହାକୁ ?" ସାଆନ୍ତ କଥାରେ ରତନୀର ଗୋଡ଼ଠୁ ମୁଣ୍ଡଯାକେ ଜଳି ଉଠିଲା । ସାଆନ୍ତ ତାର କତିକି ଯାଇ ଠିଆହେଇ କହିଲେ, "କଅଣ କାହିଁକି କାନ୍ଦୁଛ ମତେ କୁହ । ଆପଣା ସ୍ୱାମୀକି ନ କହିବ ତ ଆଉ ଦୁଃଖ କଥା କହିବ କାହାକୁ ?" ସାଆନ୍ତ କଥାରେ ରତନୀର ଗୋଡ଼ଠୁ ମୁଣ୍ଡଯାକେ ଜଳି ଉଠିଲା । ଭାବିଲା ମଲେ ମରିବି ପଦେ କହିବି । ଝଟ ଉଠିଯାଇ କହିଲା, "ମଲାମୋର, ତେତେ କୋଉଦିନ ବାହା ହେଲି ? ଫକୀରା ମଲା ନାହିଁ ମତେ ଆଣି ଏଠି ଏତେ ରଙ୍ଗ କରାଉଛି, ଲୋକା ମଲା ନାହିଁ ମତେ ପୂରେଇ ଏଠି ନାଟ ଦେଖୁଚି ।" ଏହା କହି ଦୁମ୍‌କିନା ତଳେ କଚାଡ଼ି ହେଇପଡ଼ି ମୁଣ୍ଡ ବାଡ଼େଇଲା । ସାଆନ୍ତେ ମହା ବ୍ୟସ୍ତହେଇ ତାକୁ ଟାଣି ଉଟାରି ସେଠୁ ଉଠେଇଲେ, ଅନେକ ବୁଝେଇ ସୁଝେଇ ତୁନି କଲେ । ହେଲେ ରତନୀ

ମୋଟେ ତୁନି ହେଉନଥାଏ । ଖାଲି କାନ୍ଦୁଥାଏ, କହୁଥାଏ – ଏ ଜୀବନ ଆଉ ରଖିବି ନାହିଁ । କାଲି ସକାଳେ ପୋଖରୀକୁ ଡେଇଁ ପଡ଼ିବି । ଅର୍ଖିତ ଜୀବନ ଏଡ଼େ ହୀନସ୍ତା ହେଲା । ଜଣେ ବାହା ହେଲା, ଆଉ ଜଣେ କହିଲା, ସ୍ୱାମୀ ! ମୁଁ ମୂଳିଆ ମୁଣ୍ଡର ଝିଅ ବୋଲି କ'ଣ ମୋର ଇଜତ ମହତ ନାହିଁ ? ତମ ଘରେ ବାରପାଇଟି କରିବି ବୋଲି କ'ଣ ମୋ ମାନ ମହତ ଗଲା । ମୁଁ ପଛେ ଗଳାରେ ଦଉଡ଼ି ଦେବି ।''

ଆଉ ବେଶି ବଢ଼ିବାର ନୁହେଁ ଦେଖି ସାଆନ୍ତେ ଆପେ ଆସି କତିରେ ବସିଲେ । ପ୍ରବୋଧ ଦେଇ କହିଲେ, ''ଆରେ ଶୁଣ, ମହାପ୍ରଭୁ ସାକ୍ଷୀ, ଦିଅଁ ଦେବତା ସାକ୍ଷୀ, ମୁଁ ତୁମକୁ ବାହା ହେଇଚି, ଫକୀରା କେହି ନୁହେଁ । ମିଛରେ ମିଛରେ ସେତକ ଭେଳିକି ହୋଇଥିଲା । ତୁମେ କଳିଆଖୋରଣୀ ବୋଲି ତୁମକୁ ଏ ଦଣ୍ଡ ।''

ରତନୀ ଟିକେ ଥଣ୍ଡା ହେଲାରୁ ସାଆନ୍ତେ କହିଲେ ଥିର ହେଇଁ ଶୁଣ । ମୁଁ ଆଗରୁ ଲୋକକତିରୁ ଶୁଣିଥିଲି ତୁମେ ଭାରି ଖୋରଣୀ, ଭାରି ସାହସୀ । ଦିନେ ମନେଥିବ ତମର, ମୁଁ ଯାଇଥିଲି ତମ ଗାଁକୁ ମାଛମାରି, ସେ ଆଜିକି ପାଞ୍ଚ ବରଷ କଥା । ସେଦିନ ତୁମର ଯୋଉ ସାହସ ଦେଖିଲି, ମୋ' ମନ ମାନିଗଲା । ମୁଁ ସାହସକୁ ଭାରି ସୁଖପାଏ । ହେଲେ ତମ ଖୋରଣୀପଣଟା ଛଡ଼େଇବା ସକାଶେ ଏତକ ଭିଆଣ କରି ବାହା ହେଲି । ଏଥର ମନ ମାନିଲା !''

''ରତନୀ ଏତକ ଶୁଣି ଗୋଡ଼ତଳେ ପଡ଼ିଗଲା । ସାଆନ୍ତେ ଆଦରରେ ପାଖରେ ବସେଇ କହିଲେ, ଏଥର ରତନୀ ନଅତୁଣ୍ଡୀ ହେଲ, ରତ୍ନାବତୀ ଦେଈ ମଙ୍ଗଳ ଚଣ୍ଡୀ ।'' ରତନୀ ମୁହଁରେ ଆଉ କଥା ନାହିଁ ।

## ଛ' କଥା

ଆରଦିନ ଦିନ ନଅଘଡ଼ି ହେଇଚି, ସାଆନ୍ତେ କଚେରୀପାଇଁ ଅଛନ୍ତି, ରତନୀ ବଇଚି ମଝିଘରେ, ଇଶରା ମା ଭଣ୍ଡାରୁଣୀ ତା' ଗୋଡ଼ରେ ଅଳତା ଦଉଚି, ଆଇଲା ଫକୀରା ବାୟା ! ତା'ହାତରେ ପତର ଠୁଙ୍ଗାଟି ।

ଫକୀରାକୁ ଅନେଇଦେଇ ରତନୀର ଗୋଡ଼ଠାରୁ ମୁଣ୍ଡଯାକ ଥରିଗଲା । ଏଇନା ସାଆନ୍ତ ବି ମିଛ କହିଲେ ? ଏ କଣ ମାୟାପୁରୀ ?'' ଫକୀରା ଘଡ଼ିଏ ଖଣ୍ଡେ ରତନୀକି ଅନେଇ କହିଲା, ''ମଲୁନୁ ପୋଡ଼ା–ମୁହିଁ, ମୁଁ ଏ ବଜାର ସେ ବଜାର, ଏ ଗାଁ ସେ ଗାଁ, ଏ ବିଲ ସେ ବିଲ ତେତେ ଖୋଜିଲାଣି, ଆସି ତୁ ସାଆନ୍ତଙ୍କ ଉଆସରେ ପଶିଲୁଣି ! କହନ୍ତି ନେଇଁ କଥାରେ କାହା କପାଳରେ ଖିରିଖିରିଷା କାହା କପାଳରେ ନଡ୍ଡ, ଆରେ ଏ ପୋଡ଼ା ଫକୀରା କପାଳରେ ଖାରିଆ ଖଡ଼ା ଚୋବେଇ ଚୋବେଇ ମରୁ !'' ତୁ ଏଠି ନଅ ତୁଅଣ, ତେର ଭଜା, ପନ୍ଦର ପିଠା, ଦଶ ଗଇଁଠା ଖାଇ ମଉଜ କରୁଚୁ, ଆଉ ଫକୀରା ଓଲୁ ତେତେ ମାଇଣା ମଙ୍ଗଳପୁର ବୋଲି ଖୋଜି ଆଇଲାଣି । ଚାଲ ଘରକୁ ଯିବୁ । ଶାଶୁ ଅନେଇଥିବ, ଶଶୁର ଅନେଇଥିବ, ଅନେଇଥିବ ମାଧିଆ, ମାଧିଆ ବୋପା ତ ଘରେ ବଇଚି, ମାଧିଆ ମାକୁ ନେଲା କିଲୋ ଗଧିଆ ! ''ଚାଲ୍ ଚାଲ୍, ଆଲୋ

ଉଠୁଚୁ ?'' ଏହାକହି ତା'ବାହାଧରି ଝିଙ୍କି ପକେଇଲା । ରତନୀ ଅକର୍ତ୍ତବ୍ୟ ହେଇଁ ଉଠି ଠିଆହେଲେ ଆଗେ ତାକୁ ଗୋଡ଼ଠୁଁ ମୁଣ୍ଡଯାକେ ଅନେଇଲା । ଇଲୋ ସେଇ ବାୟା ତ ! ସାଆନ୍ତ କଥା ମନେକରି ତା'ର କଲିଜା ଦୁହିଁ ହେଇଗଲା । ସେ କ'ଣ କରିବ କିଛି ବୁଝିନପାରି କାଠ ପରି ଛିଡ଼ା ହେଇ ରହିଲା । ଈଶରା ମା କହିଲା, ''ଇଲୋ ଯାଆଲୋ, ଡାକୁଚି ! ଶାଶୁ ଶଶୁର ଅନେଇଥିବ, ପାଞ୍ଚ ପାଇଟି ପଡ଼ିଥିବ । ଆପଣା ଘରକୁ ଯିବାକୁ ଏତେ ହାତଧରା ଗୋଡ଼ଧରା !'' ଏଥର ରତନୀର ପାଟି ଫିଟିଲା । ଈଶରା ମା'କୁ ବହେ ଶୋଧି ମୁଣ୍ଡ ବାଡ଼େଇ କାନ୍ଦି ବସିଲା । ସେତେବେଳକୁ ସାଆନ୍ତ ଆସି ହାଜର । ସାଆନ୍ତଙ୍କୁ ଦେଖି ସରମରେ ରତନୀ ମାଟିରେ ମିଶିଗଲାଣି । ତାଙ୍କ କଚିଆ ଗୋଳ ଦେଖି ସାଆନ୍ତ କହିଲେ, ''କିଅ ଫକୀରାଚରଣ, ଆମ ଉଆସ ଭିତରେ ଏତେ ଗଣ୍ଡଗୋଳ କିଆଁ ଲଗେଇଚ ?'' ସାଆନ୍ତ କଥା ଶୁଣି ଫକୀରା ଟିକେ କାନ୍ଦି ପକେଇଲା, ଟିକେ ନୁହ ପୋଛି ପକେଇଲା, କହିଲା ସାଆନ୍ତେ ହଜୁର ନିଶାପ କର । ପଅରଦିନ ରାତିରେ ବାହା ହେଲି, କାଲି ସଖାଳେ ଗାଁକୁ ଅଇଲି, କନିଆକୁ ଈଶରାମା କତିରେ ଛାଡ଼ି ଗଲି ବଜାରକୁ, ଏଣେ କନିଆଟି ତମ ଘର ପିଠା ସୁଆଦ ପାଇ ଆମ ଗରିବଗୁରୁବା, ମୂଲିଆ ମୁଣ୍ଡର ପଖାଳ ଭାତ, ପିତା ଶୁଖୁଆ ମଣୋହୀରେ ଆଉ ରାଜି ନୁହନ୍ତି । ଆଉ ଠା'ରୁ ଉଠୁନାହାନ୍ତି । ଏ ଈଶରା ମାଁ ଭଣ୍ଡାରୁଣୀ ତାକୁ ଭଲ ସୁଆଦ ଚଖେଇଲା ! କିଲୋ ତୋ ସାଆନ୍ତ ଘର ଖିରି ଖିରିଷା ତେତେ ବଡ଼, ଆମ ହଳିଆ ସୁଆଗ ତୋ' ସାଆନ୍ତ ଘରେ । ''ଈଶରା ମାଁ ବି ଛାଡ଼ିଲାବାଲୀ ନୁହେଁ ।'' ସେ କହିଲା, ''ଆରେ ନିଆଁଲଗା, ମୁଣ୍ଡପୋଡ଼ା ସାଆନ୍ତ ବୋହୂକୁ କୁଆଡ଼େ ନବାକୁ ବଇଚୁ ?'' ହାଣି ଦେବଟି ତୋତେ ?'' ହଣା ନାଁରେ ବାୟା ଚପିଗଲା । କାନ୍ଦି ପକେଇ କହିଲା, ''ଆଲୋ ଈଶରାମାଁଲୋ, ହାଣ୍‌ନାଁ ଦାନ୍ତରେ କୁଟା ଦଉଚି, ଗୋଡ଼ ଧରୁଚି, ହାତ ଧରୁଚି, ହାଣ୍‌ନା ଭୋ, ଖୁର ଘଷନାଁ ଲୋ ! ମୁଁ ପରା ମୋ' ବୋପା ମାଁର ଏକଇର ବଳା ବିଶିକେଶନ ! ନେ ନେ ମିଠେଇ ମଧୁରା ଖା !'' ଯା କହି ମିଠେଇ ଠୁଙ୍ଗାଟା ଈଶରା ମା' ଉପରକୁ ଅଜାଡ଼ି ଦେଲା । ଈଶରା ମା' ତାକୁ ଦି'ଚଟକଣା ବସେଇ ଦେଲା ।'' ବାୟା ପୁଣି କାନ୍ଦିପକେଇ ସାଆନ୍ତ ଗୋଡ଼ତଳେ ପଡ଼ିଗଲା, କହିଲା ଦେଖିଲେ ସାଆନ୍ତ ଈଶରା ମା'ଗୁଣ, କହନ୍ତି ନେଇଁ ଜାତି ଭଣ୍ଡାରୁଣୀ, ନହୁରୁଣୀରେ ଖୋବେ ଦବ ! ତାକୁ କି ବିଶ୍ୱାସ ! ଏବେ ନିଶାପ କର ! ଭଲରେ ଭଲରେ ବିଦା' ଦିଅ ।

''ବିଦା ନବୁକିରେ !'' ଏହା କହି ଦାମା ବାରିକ ପଛାଡୁ ଆସି ଫକୀରା ପିଠିରେ ଦି'ବିଧା କସିଦେଲା । ଯେମିତି ହାଡ଼ ଭାଙ୍ଗିଗଲେ ଲୋକେ ଛଟେଇ ହୁଅନ୍ତି, ଫକୀରା ଠିକ୍ ସେଇପରି ହେଇ ତଳେ ପଡ଼ିଯାଇ କହିଲା, ''ଇଲୋ ମଲି ଲୋ, ମଲି ଲୋ, ମୋ'ହାଡ଼ ଭାଙ୍ଗିଲା, ମୋ'ଜୀବ ଛାଡ଼ିଗଲା'' ଯା କହି ମୋହ ଗଲା ।

ରତନୀର ଆଉ ସହ୍ୟ ହେଲା ନାହିଁ । ଈଶରା ମା'କୁ କହିଲା, ''ମଲା ଲୋକଟାର ଚେତା ବୁଡ଼ିଗଲାଣି, ମୁହଁରେ ପାଣି ଛାଟି ଦେ ! ଇଲୋ ଏ କଣ ହଉଚିମ ସବୁ ।'' ସାଆନ୍ତେ ଦାମାକୁ କହିଲେ, ଆଣରେ ଦାମା ପାଣି ଡାକେ । ଦାମା ଗରାଏ ପାଣି ଆଣି ରତନୀ ଗୋଡ଼ କତିରେ ଦୁମକିନା କଚି ଦେଲା । ଈଶରା ମା ଥିଲା ଥିଲା ପାଣି ଗରା ଉଠେଇ ଫକୀରା ମୁଣ୍ଡରେ ଓଜାଡ଼ି ଦେଲା ।'' ଆରେ ସାଇଲେ ସାଇଲେ କହି ଫକୀରା ଉଠିପଡ଼ି ମୁଣ୍ଡଟା ଏଡ଼େ ଯୋରେ ଝାଡ଼ି

ଦେଲା ଯେ ପରଚୂଳଟା ତା' ମୁଣ୍ଡରୁ ଖସି ହାତେ ଦୂରରେ ପଡ଼ିଲା । ସାଆନ୍ତେ ହୋ' ହୋ' ହେଇ ହସି କହିଲେ, ''ଏଥର ଧରା ପଡ଼ିଲୁ ଗୁରୁଚରଣ ! 'ଗୁରୁଚରଣ ଟିକେ ଅପ୍ରସ୍ତୁତ ହେଇ କହିଲା, ଆଉ ଏ ଇଶରା ମାଟା ମୋ' ଚୁଟି ଝିଙ୍କି ଦେଲା ।

ରତନୀ ତା' କାଣ୍ଡ ଦେଖି ହସିବ କି କାନ୍ଦିବ କିଛି ବୁଝିପାରିଲା ନାହିଁ ।

ସେଠୁ ସାଆନ୍ତେ ଗୁରୁଚରଣ, ଦାମା ବାରିକ ହେରିକା ଗଲେ ପୋଖରୀକି ଗାଧୋଇ ।

ଜେଁ ରାଧାଁ କୃଷ୍ଣଁ କିଁ ଜେଁ – ଏଁ ଏଁ ବଡ଼ପାଟିରେ ଡାକି ଡାକି ଦୁଆରକୁ ଆଇଲା ଗୋଟିଏ ନାହାକ । ଇଶରା ମା ଯାଇ ତାକୁ ଭିତର ଅଗଣାକୁ ଘିନିଆସିଲା । କହିଲା, ''ନାହକେ ଖଡ଼ି ପକେଇଲ ? ନାହାକ କାଶି କାଶି ଘଣ୍ଟାଏ କଲା । ରତନୀ ଅନେଇଲା, ଦେଖିଲା ଅଗଣାରେ ବଇଚି ଗୋଟାଏ ସତୁରି ବରଷର ବୁଢ଼ା ମଣିଷଟିଏ, ତା ବାଳ ଝୋଟପରି, ତା' ନାକ ଅଗକୁ ଗୋଟାଏ ବଡ଼ ପ୍ରଚକ୍ଷୁ । କାଖରେ ବିଡ଼ାଏ ତାଳପତ୍ର, ଫଟା ପାଞ୍ଜି ଗଣ୍ଡାଏ । ତା'ରୂପ ଭେକ ଠିକ୍ ଯେମିତି ଗୋଟିଏ ପାତିମାଙ୍କଡ଼ ପରି । ବୁଢ଼ା ଖାଲି ଥରୁଚି, କାଶୁଚି, ଛିଙ୍କୁଚି, ହାଇ ମାରୁଚି, ଥରେ ଥରେ ଗଳା ଖଙ୍କାରୁଚି । ତା' ଢଙ୍ଗ ଦେଖି ରତନୀକି ଭାରି ଚିଡ଼ି ମାଡ଼ିଲା । ସେ କହିଲା, ''ଇଶରା ମା' ଏଇ ଥୁରୁଥୁରିଆ ନାହାକଟାକୁ କିଆଁ ଡାକି ଆଇଲୁ ?'' ଚାଉଳ ଦେ ସେ ଯାଉ ।'' ରତନୀ କଥା ନାହାକ କାନରେ ପଡ଼ିଲାକ୍ଷଣି ସେ ଉଠି ପଡ଼ି କହିଲା, ''କିଁଲୋ ପଦିଆଁ ନାତୁଣୀ, ବିଦିଆଁ ଝୁଅଁ ! ତୋରିଁ ଏଡ଼େଁ ଚାଡ଼ଁର । ବାହାଁ ସାହାଁ ହେଲୁଁ । ଜାତକ ସୁଜେଇଁଥିଲି ଖଁଡ଼ି ପକେଁଇଥିଲିଁ, ଆମଁ ସିଦ୍ଧା ଗଣ୍ଡାଁକ ମାରିବୁ କିଲୋ ? ଆଁଣେ ଆଁଣେ ସବୁଁ ଚୁଡ଼ା, ଦୋପାଁଗି ଉଖୁଡ଼ା, ନଡ଼ିଆଁ ପାଞ୍ଚପୁଞ୍ଜାଁ, ମନକୁଁ ବୁଝାଁ; ଆଁରେ ବୋଇଁଲା କିନାଁ – କନିଁଆ ରତଁନୀ ନଁଅତୁଣୀ, କଳିହୁଡ଼ିଁ, ଉଚାରଁଚଣ୍ଡୀଁ – ବରଁନା, କୃଷ୍ଣଚନ୍ଦ୍ରଁ ରାଉଁତୁରା, ଛାତିଁ ଥୁରୁ ଥୁରୁ ହେସଁ ହଗୁରା ।''

ବିଲେଇଁ ଦେଖିଲେ ବୋଲିଁଇ ବାଘ,
ଖାଏଁ କୁଣ୍ଡାଁପିଠାଁ କଳିଁମସାଗଁ,
ଡାଳୁଅଁ ଚାଉଁଳ କୋକିଁଅ ଡାଲିଁ,
ପିନ୍ଧେଁ ଛିଣ୍ଡାଁକଛାଁ ସହସ୍ରେଁ ତାଁଳି ।''

ଗୀତ ଗାଇସାରି ନାହକ ବସି ପାଞ୍ଜି ଫିଟେଇଲେ । ଆଙ୍ଗୁଠି ଗଣିଲେ । ''ମେଷଁ, ବୃରୁଷଁ, ମିଥୁନଁ, କଁରକଁଟ, ସିଂହ, କନିଆଁ, ତୁଳାଁ, ବୃରୁଁଛିକ, ଧନୁଁ, ମକଁର, କୁମ୍ଭଁ, ମୀନଁ । ଆରେଁ ବୋଇଲାଁ କିନାଁ ବୃଚ୍ଛିକ କର୍କଟ ମୀନସ୍ୟ ବିପ୍ରାଃ, କନିଆଁ ନାଁ ରତନୀ ଏଁ – ମେଷଁ, ବୃରୁଁଷ, ମିଥୁନଁ, କକଁଡ଼ା, ସିଂହ, କନିଆଁ – କନ୍ୟାଁରାଶି – ନଇକ୍ଷତର ଏଁ ଅଶ୍ୱିନୀ ଦୁଇପାଁ, କୃରୁତିଁକା, ରୋହିଣୀ, ମୁରୁଗଶିଁରା, ଆରେଦ୍ରାଁ – ଏ ବୋଇଲାକିନାଁ କନ୍ୟାଁରାଶିଁ ଅଶ୍ୱିନାଁ ନୈକ୍ଷେତ୍ର । ଫଳ ହେଲା – କନ୍ୟାଁ ସୁଲଇକ୍ଷଣାଁ ପୁତ୍ର କନ୍ୟାଁ, ଧନ ଧାନ୍ୟଁ, ପୁରୁନାଁ, ଡାହଁଣପାଏଁ ଲକ୍ଷ୍ମୀଁ ବାଁ ପାଏଁ ହତଁଃଶିରାଁ । ଗୁରଣ୍ଡଁ ମାରୀ, ପୁଅଁ କଚାଡ଼ିଁ ।

ନାହାକଙ୍କର ଗଣା ଶେଷ ନୋହୁଣୁ ସାଆନ୍ତେ, ଗୁରୁଚରଣ ଗାଧେଇ ଆସିଲେ । ଗୁରୁଚରଣ ନାହାକ କତିରେ ବସିଗଲା, କହିଲା, ଅବଧାନେ ମୋ ରାଶି କହିବଟି । ନାହାକ ପ୍ରଚକ୍ଷୁଟେକି

ତା'ମୁହଁକୁ ଚାହିଁ କହିଲା, ''ତମ ନାଁ କହ ।'' ଗୁରୁଚରଣ କହିଲା 'ମୋ' ନାଁଟି ଫକୀରା ମୋ' ବୋପା ନାଁଟି ଭିକାରିଆଁ, ମୋ' ଜେଜେ ବାପା ନାଁଟି ଭରଡିଆ, ମୋ' ଅଣ ଜେଜେ ବୋପା ନାଁଟି ଘରଡିଆ । ଯା କହି ଦଉଡ଼ିଯାଇ ନାହାକର ଚୁଟି ଟାଣି ଦେଲା । ସେ ତ ପରଚୂଳା ଉପୁଡ଼ିପଡ଼ିଲା । ନାହାକ ଭିତରୁ ହରି ବାହାରିପଡ଼ିକ ରତନୀ ଗୋଡ଼ତଳେ ପଡ଼ିଯାଇ କହିଲା, ବୋହୂ ସାଆନ୍ତାଣୀ କ୍ଷେମା କର, ବାଳକ କଥାରେ ଦୋଷ ନଧର । ଆମେ ପିଲାଜାତି ଅତି ଅବୁଝା, ତୋଷ ଆମକୁ ଦେଇ ଉଖୁଡ଼ା ଚୁଡ଼ାଭୁଜା ।''

ସେଦିନ ତାଙ୍କ ଘରେ ହେଲା ଭାରି ହସ । ହସି ହସି ସଭିଙ୍କର ପେଟ ପରାସ ହେଲା ।

ସଞ୍ଜବତୀ ଲାଗିଲା । ରତନୀ ବସି ପାନ ଭାଙ୍ଗୁଥିଲା । ଗୁରୁଚରଣ ଆସି କହିଲା, ଆସ ଘରକୁ ଯିବା, ''ଅନାଇଁ ଥିବେ ଶାଶୁ ଶଶୁର ।'' ରତନୀ ଉଠିପଡ଼ି ଧାଇଁଯାଇ ମଝି ପିଠିରେ ଦୁମକିନା ବିଧାଟିଏ ଦେଲା । ଗୁରୁଚରଣ ହସି ହସି ଦାଣ୍ଡକୁ ପଳାଇଗଲା । ସେହିଦିନୁ ଗୁରୁଚରଣ ଆଉ ହରି ତା' ସାଙ୍ଗେ ବଢ଼ନ୍ତି ନାହିଁ । ସାଆନ୍ତଙ୍କ ଶିକ୍ଷାରେ ନଅତୁଣ୍ଡୀ ଭାରି ବଦଳିଗଲା । ଆଗ ମଣିଷ ଆଉ ସେ ନୁହଁ । ଯେମିତି ସଭ୍ୟ, ସେମିତି ଭଲ । ତା'ଖୋରଣିପଣ କୁଆଡ଼େ ଗଲା । ସାଆନ୍ତେ ତା' ପାଇଁ ଗୋଟାଏ ମାଷ୍ଟରାଣୀ ଆଣିଲେ ! ଛମାସରେ ସେ ସବୁ ପଢ଼ି ପକେଇଲା । ତାର ଭାରି ବୁଦ୍ଧି, ଯାହା ଧରୁଥାଏ ତା' ଶିଖୁଥାଏ । ସାଆନ୍ତେ ଘର ପାଖରୁ ଭଲ ସୁଆର ମଗେଇ ତାକୁ ଅନେକ ଅନେକ ପ୍ରକାର ରନ୍ଧାବଢ଼ା ପିଠା ପଣା ଶିଖେଇଲେ । ନିଜେ ଗାଉଣା ବାଜଣା ଶିଖେଇଲେ । ଅରଟରେ ସେ ଏମିତି ସରୁସୂତା କାଟି ଶିଖିଲା ଯେ ସେ ଗାଁରେ ତା'ଠୁ ବଳି ଆଉ ଭଲ ସୂତା କେହି କାଟିପାରୁନଥିଲେ । ସେ ଦୁଃଖୀ ଘର ଝିଅ, ଏଠି ସୁଖରେ ରହିଲା, ବାର ଚିଜ ପିନ୍ଧିଲା । ସ୍ୱାମୀଟିଏ ଦିଅଁ ଲେଖା । କି କଥାକୁ ତାକୁ ଦୁଃଖ ।

କଥା ଲୁଚି ରହିଲା ନାହିଁ । ପୁତୁରା ଆଉ ଘରକୁ ବେଶି ଆସୁନାହିଁ । ଘରେ ତାରପରା ବୋହୂ । ନାରେଣୀ ଦେଈ ବଡ଼ ମନଦୁଃଖରେ କାଳ କାଟନ୍ତି । କୃଷ୍ଣକୁ ବୋହୂ କଥା କହିଲେ, କୃଷ୍ଣ ମୁହଁ ମୋଡ଼ନ୍ତି, କହନ୍ତି ତୋ ମନ ଇଚ୍ଛା ବୋହୂ କରିଛୁ । ତୋ'ଘର ଆଲୁଅ କରି ବସିଥାଉ । ଯେ ସ୍ୱାମୀକୁ ମାନିଲା ନାହିଁ ସେ କି ସ୍ତିରୀ । ଘରେ ପାଟ ପଠନୀ ପେଡ଼ିରେ ଖୁନ୍ଦା ହେଇଚି, ସିନ୍ଦୁକରେ ସିନ୍ଦୁକେ ଅଳଙ୍କାର । ପୋଇଲୀ ପରିବାରୀ ଅଛନ୍ତି ଖଟିବାକୁ । କୋଉ ସୁଖରେ ଊଣା ଯେ ସ୍ୱାମୀ ନ ହେଲେ ଚିନ୍ତା କଣ ?

ଉମା ସୁନ୍ଦରୀ ଭାରି ଅଭିମାନୀ । ଅଭିମାନରେ ଆହୁରି ଗଉଁ ଧରି ବସନ୍ତି । ସେ ବଡ଼ଘର ଝିଅ; ଟିକେ କଥା ହେଲେ କହନ୍ତି ମୋତେ ଛାଡ଼ିଦିଅ ମୁଁ ବାପ ଘରକୁ ଯିବି । ଏଠି ବାର ଲୋକର ବାର ବୋଲଣା ସହିପାରିବି ନାହିଁ । ମଲା ମୋର, ମୋ' ବାପର କିସ ଅଭାବ ଯେ ଏଠି ପଡ଼ି ପୋଇଲୀଙ୍କ ହାଉଳି କଥା ଶୁଣିବି ?

ଥରେ କୃଷ୍ଣ ତା'କଥାରେ ଭାରି ଖପା ହେଇ ବାପ ଘରକୁ ପଠେଇଦେଲେ । ସେହିଦିନୁ ଆସି ଦେଢ଼ବରଷ ହେଲା ଉମା ବାପ ଘରେ । ଏହି ଭିତରେ ସାଆନ୍ତେ କାହାକୁ ନକହି ନ ବିଚାରି ରତନୀକି ବିଭା ହେଲେ । ହେଲେ କଥାଟା ଲୁଚିବ କୁଆଡୁ ? ବିଭା ହବାର ଛମାସ ନ

ଯାଉଣୁ ଉମା ବାପଘରୁ ଖବର ପାଇଲେ । ଉମା ଏକଥା ଶୁଣି ପହିଲି ତା' ମନଟା କେମିତି ହେଇଗଲା, ପରେ କହିଲା, ହ ! ଯେତେଟା ବାହା ହେଲେ ମୋ' ଗୋଡ଼ ତଳକୁ ତ । ଉମା ମା' ସଂସାରୀ ମଣିଷ । ସେ ଭାରି ଦୁଃଖରେ ନାରେଣୀ ଦେଈଙ୍କି ଖବର ପଠେଇଲେ । ନାରେଣୀ ଦେଈ ଏ କଥା ଶୁଣି ତାଙ୍କ ମୁଣ୍ଡରେ ଆକାଶ ଛିଣ୍ଡି ପଇଲା । ସେ ସେହିକ୍ଷଣି ସୁଆରୀରେ ବସି ଆରଦିନ ସକାଳେ ସରଦେଇପୁରରେ ହାଜର ।

ଘରେ ଗୋଡ଼ ଦେଲାମାତ୍ରେ ରତନୀକି ଦେଖି ଆଗେ ବହେ ଗାଳିଦେଲେ । ରତନୀ ଆଗ ଶାଶୁର ଚର୍ଚ୍ଚା-ବୁଝିଲା । ସେ କିନ୍ତୁ କାହାରି ପାଣି ଛୁଇଁଲା ନାହିଁ । କହିଲେ ତୁ କି ଘର ବୋଲି କି ଘର ଝୁଅ, ତୋ' ହାତରୁ ପାଣି ଛୁଇଁବି ?'' ଏ ଅନ୍ୟାୟ କଥା ବରଦାସ୍ତ କରିବା ଭଳି ପ୍ରକୃତି ରତନୀଠି ନଥିଲା ସେ କହିଲା, ''ମୋତେ ମିଛକୁ ଗାଳି ଦିଅଁନା ତମ ପୁତୁରାକୁ ପଚାର ।'' ସାଆନ୍ତେ ଘରେ ନଥିଲେ । ଆସି ଶୁଣିଲେ ଅପା ଆସିଛି ପୁତୁରାକୁ ଦେଖିଲାମାତ୍ରେ ନାରେଣୀ ଦେଈ ଆହୁରି ପାଟିକଲେ । କହିଲେ ମୋତେ ନବିଚାରି, ନପଚାରି ଗୋଟାଏ ଅଇଁଠାଖାଇଘର ଝୁଅକୁ ଆଣି ଆମ ବଅଁଶରେ ପୂରେଇଲୁ । ଆମ ଇଜ୍ଜତ ମହତ ଗଲା; ଆଉ ତା'ହାତରୁ କିଏ ପାଣି ଛୁଇଁବ ? ତୁ ପୁଣି ମୋତେ ମୁହଁ ଦେଖାଉଛୁ ?'' ପୁତୁରା ତା'କଥାରେ ପାଟି ନ ଫିଟେଇ କହିଲେ, ହଉ ବଜାରକୁ ସରବା ଯିବ, ଜଳଖିଆ ଆଣିଦବ ଖା' । ବୁଢ଼ୀ କହିଲା, ନାଁ ମୁଁ ତୋ'ମୁହଁ ଚାହିଁବି ନାହିଁ, ଆଗେ ବତା ଏ ଅଲିକ୍ଷିଣୀକି କୋଉଠୁ ଆଣିଛୁ । ତାରପରା ବୋହୂ ତୋତେ ପସନ୍ଦ ହେଲାନାହିଁ, ଏଇ ଚେପ୍‌ଟୀନାକୀ, ଉଚ୍ଚୁକପାଳୀ ଥନ୍ତଲ-ପେଟୀ ତୋର ପସନ୍ଦ ହେଲା ! ଆଜି - କାଲିକା ପିଲାଏ ପରା ଭାରି ଅବାଧ । ଆମ ବଂଶରେ ଅଛନ୍ତି ଯେ ଆମେ କହିବୁଁ ବୋଲି ମୁଁ ।'' ଏହା କହି ବଡ଼ ପାଟିରେ କାନ୍ଦିବାକୁ ଆରମ୍ଭ କଲେ । ତାଙ୍କ ବ୍ୟସ୍ତରେ କୃଷ୍ଣ ତାଙ୍କ ଗୋଡ଼ତଳେ ପଡ଼ିଗଲେ, କହିଲେ ମାଁ ତୁ, ଅପା ତୁ, ମାଇଲେ ମାର୍ ଜୀଆଇଲେ ଜୀଆ । ହେଲେ କଥାଟା ବୁଝ ! ତୁ କହୁଛୁ ତାକୁ ଘର ସେ କି ଘର, ହଉ ଆଗକରି କହ ତୁ କି ଘର ବୋହୂ, ମୋ' ପିଇସା ଦନାର୍ଦ୍ଦନ ଛୋଟରା' ମାଇଣା ମଙ୍ଗଳପୁରୁ ବାଇଧର ଜେନାର ମାମୁଁ ପୁଅ ଭାଇଟି ! ଆଉ ଏ ବୋହୂ ତାରି ନିଜ ଝିଆରୀ । ପଦନ ଜେନା ଉଦୟ ଜେନା ଏକା ମାଁର ଦି'ପୁଅଟି । ଏ ବୋହୂ ପଦନର ପୁଅ ବିଦିଆର ଝିଅ ।

ବୁଢ଼ୀ ଏତକ ଶୁଣି ଟିକେ ନରମ ହେଲା । ରତନୀ ଆସି ଗୋଡ଼ତଳେ ପଡ଼ି ହାତଧରି ଉଠେଇଲା । ବାରରକମ ଆଣି କଡିରେ ବସି ଶାଶୁକୁ ଖୁଆଇଲା । ଶୋଇଲାରୁ ନିଜେ ଯାଇ ଗୋଡ଼ ଘଷିଦେଲା । ତା ଶିଷ୍ଟାଚାରରେ ବୁଢ଼ୀ କ୍ରୋଧ ଭୁଲିଗଲା । ଟିକେ ପ୍ରେମ ହେଇଗଲାରୁ, ଯା ପିଇସାର ବାପ ଆଉ ତୋ' କକେଇ ବାଇଧର ମାଁ ଏକା ମାଁ ପେଟର ଭାଇ ଭଉଣୀ । ସେଇ ଲେଖାରେ ତୋ' ବାପ ମୋ' ଦିଅର । କୃଷ୍ଣ ବାହାହେଲା ଭଲ କଲା, ହେଲେ ମୋତେ ଟିକେ ବିଚାରିଥାନ୍ତା କି ଲୋଡ଼ିଥାନ୍ତା ।

ଏତିକିବେଳକୁ ହରି ଘର ଭିତରକୁ ପଶି ଆସୁଥିଲା । ଅପା କଥା ତା'କାନରେ ପଡ଼ିବାରୁ ସେ କହିଲା, ''ତୋତେ ବିଚାରିଥିଲେ ଆମ ବାହାଘରଟା ଆଉ ଉଠିଥାନ୍ତା ? ବୋହୂକୁ ସମାନ ବୁଝିଛୁ, ପକ୍କା କଳିଆଖୋରଣୀ ନଅତୁଣ୍ଡୀ । ରତନୀ ଲାଜରେ ମୁହଁ ତଳକୁ ପୋତିଲା ।

ଚାରିଟାବେଳେ ରତନୀ ଗଲା ରୋଷେଇଶାଳକୁ ରାନ୍ଧି, ଆଉ ଗୁରୁଚରଣ, ହରି ବସି ଅପା ଆଗରେ ବାହାଘରର ସବୁ କାରଖାନା ଗୋଟି ଗୋଟି ବୟାନ କଲେ । ବୁଢ଼ୀ ଶୁଣି ହସି ହସି ତା' ପେଟ ପରାସ । ଝରକାବାଟେ ରତନୀ ଚାହିଁଲା ଶାଶୁ ଭାରି ହସୁଛନ୍ତି । ଦାମା ଆସି କହିଲା, "ଛାଇଁଲ ସାଆନ୍ତାଣୀ, ଅପା–ସାଆନ୍ତାଣୀଙ୍କ ଆଗରେ ସାନ ସାଆନ୍ତେ ଆଉ ଗୁରୁଚରଣ ନନା ବାହାଘରର ସବୁ କଥା ବୟାନ କଲେଣି । ରତନୀକି ଶୁଣି ଆହୁରି ଲାଜ ମାଡ଼ିଲା ।

ପୁତୁରା କତିରେ ବୁଢ଼ୀ ରହିଲେ, ଦି'ମାସ । ବୋହୂର ଗୁଣକ୍ରିୟାରେ ପହିଲି ପହିଲି ଚିଡ଼ୁଥିଲେ । ତାଙ୍କର ଚିଡ଼ିବାର କାରଣ ରତନୀ ବେଶି ଲାଜ କରୁନଥିଲା । ସମସ୍ତଙ୍କ ସାଙ୍ଗରେ ମିଳାମିଶା କରୁଥିଲା । କିନ୍ତୁ ଦେଖିଲେ ସେ କାମରେ ଭାରି ଫୁର୍ତ୍ତି, ସ୍ୱାମୀର କଥାରୁ ପାଦେ ଟଳେ ନାହିଁ । ନିଜ ହାତରେ ନ ତିଅଣ, ଦଶ ଭଜା କରି ସ୍ୱାମୀ ଶାଶୁଙ୍କୁ ପରଷୁଛି, ସମସ୍ତେ ଖାଇ ସାରିଲେ ଆପେ ଖାଇ ବସୁଛି । ଚାକରଙ୍କ ଖିଆପିଆ ପ୍ରତି ତାର ଭାରି ଆଖି । କେହି ତା'କଥାରୁ ବାହାର ନୁହେଁ । ଘର ଗୋଟାକ ଚଳେଇ ଏଣେ ଦି'ପହରିଆ ବସି ପାଠ ପଢୁଛି । ନିତି ଘଣ୍ଟାଏ ଅରଟରେ ସୂତା କାଟୁଛି, କଳ ଘର୍‌ଘର୍ କରି ଜାମାଜୋଡ଼ା ଶିଲେଇ କରି ପକାଉଛି । କାଇଁଶି ଡାଲା ସିଉଁଚି, ଚିତ୍ର ଆଙ୍କୁଚି । କୋଉ କଥାରେ ଊଣା ନୁହେଁ । ତା'ଠି ପୁଣି ଫେସନ କିଛି ନାହିଁ । ସ୍ୱାମୀର ଇଚ୍ଛା ଯାହା ତା'ଇଚ୍ଛା ତା'ହି । ତା'ଠି ଦେଖିବ ନାହିଁ ସରୁ ଲୁଗା, ବାସନା ତେଲ ଅତର । ତା'ଠି ଦେଖିବ ନାହିଁ ଅଳସପଣ ।

ଦିନେ ସଞ୍ଜୁଆ ପିଇସୀ ପୁତୁରା ପିଣ୍ଡାରେ ବସି ଦୁଃଖ ସୁଖ ହେଉଛନ୍ତି, ରତନୀ କଥା ପକେଇ ବୁଢ଼ୀ କହିଲେ, "ତୋ' ବୋହୂ ନାଁ ରତନ, ତା'ଗୁଣ ରତନ ।" ପରେ ଦୀର୍ଘଶ୍ୱାସ ପକେଇ କହିଲେ, ଉମା ଏଇଭଳି ତୋ କଥା ମାନିଥିଲେ ଆଜି କର୍ପୂର ଚୁରିଥାନ୍ତା । ହେଲେ ସେ କଣ ଶୁଣିଲା ? ଆଗ ପଛ ବିଚାରିଲା ?

କୃଷ୍ଣ ଦୁଃଖରେ କହିଲେ ବଣର ବାଘକୁ ଆଣି ବଶ କଲି । ସେ ବଡ଼ଘର ଝିଅ ହେଇ କୁବୁଦ୍ଧି ଧଇଲା ! ହେଲେ ତାକୁ ମୁଁ ଛାଡ଼ିଦେଉ ନାହିଁ, ଟିକେ ଚେତୁ ତେବେ ଆଣିବି । ନୋହିଲେ ପରକୁ ଆମେ କିଆଁ ଉପଦେଶ ଦେବୁଁ ? ଆମ ଘରସୁନା ତ ଭେଣ୍ଡି, ଆମେ ପରକୁ ତିଆରିବୁଁ, ତମେ ଭଲ ହୁଅ, ସଉକି ଛାଡ଼, ଆପଣା ଦେଶର ମହତ ରଖ । ସେ'ଦିନୁ କହିଥିଲେ ଲୋ ଅପା ବଡ଼ ଘର ଝିଅ ଆଣିବ ନାହିଁ । ବଡ଼ ଘରେ ଝିଅ ଦବ । ବଡ଼ଘର ଝୁଅ ଆଣି ଏ ହଟହଟା ସିନା । ସ୍ୱାମୀକି ମାନିଲା, ନା ଶାଶୁକୁ ମାନିଲା । ତାକୁ ସ୍ତିରୀ କହିବ ? ସେ ନିତାନ୍ତ ଅଲକ୍ଷ୍ମୀ । ଅଲକ୍ଷ୍ମୀ ପୁରୁଷ ପୁଅକୁ ଆଶ୍ରୟ କଲେ, ପୁରୁଷ ପୁଅ ସଇଲା । ଆମ ଦେଶର ଆଉ ଏଡ଼େ ଦୁର୍ଗତି କାହିଁକି ? ଝିଅଯାକ ଗୃହଲକ୍ଷ୍ମୀ ହବା ଦୂରେଥାଉ ଅଲକ୍ଷ୍ମୀ ହେଲେଣି । ସ୍ୱାମୀ ଭକ୍ତି ଗଲାଣି । ଦେଶ ଲୁଗା ହେଲାଣି ସାର ପଦାର୍ଥ । ମୁଁ ଉମାକୁ ଏଇ ଶିକ୍ଷା ଦେବା ମାନସରେ ଯା କଲି । କହିଲି ତ ହେଲା ନାହିଁ । ବୋଲିଲି ତ ନାହିଁ । ପଦେ କହିଲେ ଗଳାରେ ଦଉଡ଼ି ଦବାକୁ ଗଲା । ଟିକେ ଅସନ୍ତୋଷ ହେଲେ ବାପ ଘରକୁ ଧାଇଁଲା । ମୁଁ ଏବେ ମର୍ଦ୍ଦପୁଅ କାହାତ ଢଳାଙ୍ଗଳି ହେବି ? ସେହିଯୋଗୁଁ ଗରିବ ଘର ଝୁଅ ଟିଏ ବାହା ହେଲି । ସେ ହେଲେ ଘର ଗରିବ । ଆମେ ହେଲୁ ଗାଁ ଜମିଦାର । ଆମ ଘରେ ଆମ ବୋହୂମାନେ ଆମକୁ ଅମାନ୍ୟ କରିବେ ଆଉ ପରଙ୍କାଏ

ଆମଠୁ ଦେଖି ଶିଖିବେତି ! ପ୍ରଜାଙ୍କ ଲାଗି ବିନା ଦୋଷରେ ଜାନକୀ ପରା ସତୀଭାର୍ଯ୍ୟାକୁ ଶ୍ରୀରାମ ବଣକୁ ପଠେଇଲେ । ଫିରି ଆମଠୁ ହାଦେ ବଢ଼ିଲେ ଆଉ ଧର୍ମ ରହିବ ?

ନାରେଣୀ କହିଲେ, "ହଁରେ ପୁଅ ଏବେ, ବୁଝିଚି, ମୁଁ ଇ ତାକୁ ମୁହଁ ଦେଇ ସର୍ବନାଶ ବାଟରେ ନେଇଚି, ସେତେବେଳେ ମୋଠୁ ମୁହଁ ପାଇନଥିଲେ କିଜାଣି ଅବା ତୋ'କଥା ମାନିଥାନ୍ତା । ମୁଁ ତା'ପକ୍ଷ ହେଲାରୁ ସେ ତ ସମସ୍ତଙ୍କୁ ଗୋଡ଼ରେ ଦଳିଲା । ଏଇଟା ମୋର ବଡ଼ ଭୁଲ୍ ।

କୃଷ୍ଣ କହିଲେ – ଯା, ହବାର ହେଇଚି, ନେଡ଼ି ଗୁଡ଼ କହୁଣୀକି ବୋହିଗଲାଣି । ହେଲେ ସେ ବି ବୋହୂ । ମୁଁ ତାକୁ ଫୋପାଡ଼ି ଦେବିନାହିଁ । ଯେତେ ଦିନ ରାଗରେ ବାପଘରେ ଅଛି ଥାଉ । ରାଗ ଭାଙ୍ଗିଲେ ଆସିବ । ନାରେଣୀ ଦେଇ ଦୁଃଖରେ ଦୀର୍ଘଶ୍ୱାସଟିଏ ପକେଇ କହିଲା – ଆଉ ରାଗ କଣ ସଦାଦିନ ରହିବ ? ମୁଁ ବୁଢ଼ୀ ହେଲିଣି, ଆଜି ଅଛି କାଲି ନଥିବି, ହେଲେ ମୋ' ରାଣ ତାକୁ ମୋଟେ ଫୋପାଡ଼ିଦବୁ ନାହିଁ । ପାତର ଅନ୍ତର କରିବୁ ନାହିଁ । ତା'ମାଫିକେ ତାକୁ ଚଳେଇବୁ । କୃଷ୍ଣ ହଁ ଭରିଲେ । ବୁଢ଼ୀ ତୋଷ ହୋଇ ଜପ କରିବାକୁ ଉଠିଗଲେ । ରତନୀ ଶାଶୁର ଜପ କରିବା ଥାନଟି ଆପଣା ହାତରେ ପରିଷ୍କାର କରି କୋଥଳୀ ଥୋଇ ଫୁଲ ତୁଳସୀ ପତ୍ର ସଜାଡ଼ି ରଖିଥିଲା । ବୁଢ଼ୀ ତାର ଭକ୍ତି ଦେଖି କହିଲେ ମୁଁ କଲ୍ୟାଣ କରୁଚି ତୁ ଯେମିତି ସଭିଙ୍କ ମନ ନେଇଚୁ, ପରମେଶ୍ୱର ସେମିତି ଏକା ତୋତେ ଉତ୍ତମ ସୁନ୍ଦର ବାଳକ ଦିଅନ୍ତୁ ।"

ଏମିତି ଯାଙ୍କ ଦିନ କଟିଲା । ହେଲେ ଗେଲ୍ହୀ ଖବର କ'ଣ ବୁଝିବା । ରତନୀ ବାହାଦିନୁ ଗେଲ୍ହୀ ମନ ସୁଖ ନଥାଏ । ଦିନରାତି ଲୋକାକୁ ଶୋଧୁଥାଏ । କଜିଆ କରୁଥାଏ, ଆଉ କାନ୍ଦୁଥାଏ । ଲୋକା ଭାବିଲା ଆଉ ନୁଟେଇବା ଭଲ ନୁହେଁ । ଗୋଟିଏ ସୁଆରୀ ବନ୍ଦୋବସ୍ତ କଲା । କହିଲା, ମାଉସୀ ଚାଲ୍ ତୋ'ଝିଅକୁ ଦେଖି ଆସିବୁ । ଗେଲ୍ହୀ ପହିଲି ପହିଲି ନାହିଁ କଲା । ମୋ'ଝିଅ ମଲାଣି କହି ଗାଳିଦେଲା । ହେଲେ ଲୋକା ବଳାଢୋରି କରି ନେଇଗଲା । ପାଲିଙ୍କି ପହଞ୍ଚିଲା ସିଧା ଜମିଦାର ଓଆସରେ । ଗେଲ୍ହୀ କୋଠାବାଡ଼ି ଦେଖି କହିଲା, "ହଇରେ ଏଠି କୋଉଠି କି ଆଇଲୁଁ ? ଏଠି ରତନୀ ଅଛି ? ଲୋକା କହିଲା, "ଏଇଠି ଅଛି," ଏସବୁ କୋଠାବାଡ଼ି ତାର । ଗେଲ୍ହୀ ତ ଅବାକ୍ । ମଝି ଅଗଣାକୁ ପଶିଗଲା ମାତ୍ରେ ଦେଖିଲା, ରତନୀ ଖଣ୍ଡେ ମଠାଲୁଗା ପିନ୍ଧି ଚଉରା ମୂଳେ ପୂଜା କରୁଛି । ହାତରେ ମୁଠାଏ ସୁନା ଚୂଡ଼ି, ଖଡୁ, କାନରେ ସୁନାଫୁଲ, ବେକରେ ସୁନାମାଳ, ଗୋଡ଼ରେ ମଲ, ଅଣ୍ଟାରେ ସରୁ ତାରହାର । ସେତେ ଢଙ୍ଗର ଅଳଙ୍କାର ବି କେବେ ଦେଖିନଥିଲା । ତା'ଆଖି ଖସି ପଇଲା । ମା'କୁ ଅନେଇ ଦେଇ ରତନୀର ଛାତି କୁଣ୍ଢେ ହେଲା । ଜମିଦାର ଜୁଆଁଇ ପାଇ ଗେଲ୍ହୀ ମହାଆନନ୍ଦ । ହେଲେ ବେଶିଦିନ ଝିଅ କତିରେ ରହିଲା ନାହିଁ । ସେହିଟା ଦାଣ୍ଡକୁ ଅଶୋଭା ଭାବି କୃଷ୍ଣଚନ୍ଦ୍ର ନିଜେ ତା' ପାଇଁ ଲୋକା ଘର କତିରେ କୋଠା ଦି'ବଖରା କରିଦେଲେ । ପରମା ଆଉ ସତିଆମା'କୁ ସାଙ୍ଗରେ ଦେଲେ । ବୁଢ଼ୀ ସୁଖରେ ବସି ଖାଇଲା । ତା'ଖୋରଣୀପଣ ତୁଟିଗଲା । ବାଇଧର ଘର ଏ ଖବର ପାଇଲେ । ଏଥର ତା'ଝିଅ ଜମିଦାରକୁ ବିଭା ହୋଇଛି ଶୁଣି ବଳେ ବଳେ ଯାଇ ତା'ସଙ୍ଗେ ସଙ୍ଗେ ମିଶିଲେ । ଗେଲ୍ହୀ ମଧ୍ୟ ପୂର୍ବରାଗ ଭୁଲିଗଲା ।

ସେତେବେଳକୁ ବାଇଧରର ଉତ୍ତମା ବୋଲି ଷୋଳବରଷର ଭାରି ସୁନ୍ଦରୀ ଝିଅଟିଏ ଥାଏ । ଗେଲ୍‌ହୀ ଠିକଣା କରି, ଝିଅକୁ ପଟେଇ ଶେଷକୁ ତାକୁ ହରିକି ହାତକୁ ଦି'ହାତ କଲେ । ଗୁରୁଚରଣଙ୍କୁ ବି ଗୋଟାଏ ବାହା କରିଦେଲେ । ତା'ଭାରିଯା ନାଁଟି ମଞ୍ଜୁଳା । ଭାରି ସୁନ୍ଦରୀ । ବାହାଘର ହେଲା । ଭାରି ଆନନ୍ଦ ହେଲା । ଏକା ଏଇଟା ପୁଣି ତାଙ୍କ ବଂଅଶର ଶେଷ ବାହାଘର । ବାହାଘର କ'ଣ କରିବେ, ବଳେ ବଳେ ବଡ଼ବୋହୂ ଉମା ସୁନ୍ଦରୀକି ଆଣିଲେ । ଉମା ସାନ ସଉତୁଣୀକି ଦେଖି ପହିଲି ଭାରି ବିରସ ହେଲା । ପରେ ରତନୀ ତାକୁ ଆଦର କରି ବଡ଼ ଭଉଣୀର ମାନ୍ୟ ଯତ୍ନ କରି କତିରେ ରଖିଲା । ତାର ବି ମତି ଗତି ଫେରିଲା ।

କିଛିଦିନ ପରେ ରତନୀର ପୁଅଟିଏ ହେଲା । ବାପ ଆଦର କରି ନାଁ ଦେଲେ ହେମଚନ୍ଦ୍ର । ସୁଖର ସୀମା ରହିଲା ନାହିଁ । ଦି'ସଉତୁଣୀ ସ୍ୱାମୀର ମନ ଯହିଁରେ ସୁଖ ହବ ସେହି କଥା କରି ଚଳିଲେ । କୃଷ୍ଣ ବି ପାତର ଅନ୍ତର କଲେ ନାହିଁ । ଦୁହିଁଙ୍କର ପିଲାପିଲିରେ ଘର ପୂରିଲା ।

## ସାତକଥା

ଆଗରୁ ଶୁଣିଛ କୃଷ୍ଣବାବୁ ବାପ ଯଦୁମଣିଙ୍କର ଦୁଇସଂସାର ଥିଲା । ସେ ମଲାବେଳେ ବଡ଼ ଭାରିଯା ପୁଅଙ୍କୁ ଜ୍ୟେଷ୍ଠ ଭାଗ, ସାନ ଭାରିଯା ପୁଅକୁ ସାନ ଭାଗ ଦେଇ ଯାଇଥିଲେ । ବଡ଼ପୁଅ ଶିବ ସବୁ ବୁଝୁଥିଲେ । ଶିବଙ୍କର କାଳ ହୋଇଗଲା । ତାଙ୍କ ବୋହୂ ଯାଇ ବାପଘରେ ଉଠିଲେ । ତାଙ୍କର ପିଲାପିଲି ନଥିଲା । ସେହି ସକାଶୁ ଶାଶୁ ମୋଟେ ତାଙ୍କୁ ଦେଖିପାରୁନଥିଲେ । ନବୀନ ତ ସନ୍ୟାସୀ ହେଇ କୁଆଡ଼େ ଗଲେ ତା' ଠିକଣା ନାହିଁ । ବଡ଼ ଭାଗତ ଦି'ବାଣ୍ଟ ହେଇ ଗୋବିନ୍ଦ ଆଉ ବୀର ପାଇଲେ । ସାନଭାଗ ବାଣ୍ଟ ବଖରା ହେଲା ନାହିଁ । କୃଷ୍ଣ ହେଲେ ଜମିଦାର, ହରି ବଡ଼ ଭାଇଙ୍କି ମାନି ଚଳିଲେ । ତାଙ୍କ କଚେରୀ ହେଲା ସରଦେଈପୁର । ସେଠି, ଉମା ରତନୀ ଆଉ ଉତ୍ତମା ରହିଲେ, ସୁଖରେ ଘର କଲେ ।

କୃଷ୍ଣବାବୁ ଭାରି ଦେଶଭକ୍ତ । କେମିତି ଆମ ଦେଶର ଭଲ ହେବ ଏଇଟା ତାଙ୍କର ଭାରି ଭାଳେଣି ଥାଏ । ସେ ଆପଣା ରାଇଜର ଭାରି ଉନ୍ନତି କଲେ । ଠା' ଠା' ପୋଖରୀ ଖୋଳେଇଲେ, ଠା' ଠା' ବାଗ୍‌ବଗିଚା କଲେ, ନୂଆ ନୂଆ ନଡ଼ିଆମାଳ, ଗୁଆମାଳ, ଆମ୍ବତୋଟା ସବୁ ହେଲା । ତାଙ୍କର ହୁକୁମ ଥିଲା, ତାଙ୍କ ଇଲାକାର ଧାନ ଚାଉଳ ଅନ୍ୟଆଡ଼େ ଯିବ ନାହିଁ । ତେବେ ଯଦି ଧାନ ମହଙ୍ଗା ହେଲା ଗରିବ ପ୍ରଜାଙ୍କ ଖଜଣା ମାଫି କଲେ, କୋଠିରୁ ଧାନ ଦେଇ ତାଙ୍କ ପରିବାର ପୋଷିଲେ । ତାଙ୍କ ରାଇଜର ଛତିଶପାଟକ ଜାତି ଏକାଠି ମଳିମିଶି ରହିଲେ । ହେଲେ ଏକଥା ସବୁ ଏକା ଦିନକରେ ହେଉନଥିଲା । ଅନେକ ଟଙ୍କା ଖରଚ ଅନେକ ପରିଶ୍ରମ ପରେ ହେଲା । ପହିଲି କ'ଣ ହେଲା ଶୁଣ । ସାଆନ୍ତେ ଦେଖିଲେ ପ୍ରଜାଏ ବଡ଼ ମୂର୍ଖ ! ୟାଙ୍କୁ ବିଦ୍ୟା ନ ଦେଲେ ତ ୟାଙ୍କୁ "ଯେତେ ମାଠୁଥିବ ମାଠ୍, ସେହି ଦରପୋଡ଼ା କାଠ୍" ହେଇ ରହିବେ । ୟା'ଭାବି ଆପଣା ଇଲାକାରେ ଚାହାଳିଗୁଡ଼ିଏ ବସେଇ ଦେଲେ । ଅବଧାନ ସବୁ ରହିଲେ । ସେଠି ଓଡ଼ିଆ ପାଠ, ଅଙ୍କ, ପଞ୍ଜା ପାଉତୀ ପଢ଼ିବା ଏଇସବୁ ଶିକ୍ଷା ହୁଏ । ଆଉ ଗାଁଯାକ ହୁକୁମ ଦେଲେ ସଭିଏଁ ମାଗଣାରେ ଆପଣା ପିଲାଙ୍କୁ ସେଠି ପାଠ ପଢ଼ିବାକୁ ଛାଡ଼ିବେ । ନୋହିଲେ

ଚୋରିମାନା । ଅବଧାନଙ୍କୁ କୋଠରୁ ଦରମା ମିଳିଲା । ଏହିପରି ପନ୍ଦରଟା ଷୋଳଟା ଚାହାଳୀ ବସିଲା । ପୁଅ ଝିଅ ସେଠି ସଭିଏଁ ଏକାଠି ପଢ଼ନ୍ତି । ପଢ଼ା ଖାଲି ଦୁଇ ଚାରି ବର୍ଷଯାକ । କିଲାସ ଉଠିଲେ । କାଗଜ ନାହିଁକି ସାର୍ଟିଫିକେଟ ନାହିଁ । ବାବୁଙ୍କ ମତରେ ପାଠ ଘୋଷି ପରୀକ୍ଷାରେ ଲେଖି ଦେଇ ଗୋଟାଏ କାଗଜ ପାଇଲେ କିଛି ଦିଗ୍‌ଗଜ ପଣ୍ଡିତ ହବନାହିଁ । ପେଟରେ ପାଠଥିଲେ ଗଲା । ଓଡ଼ିଆଙ୍କୁ ଏ ପାଠ ବଡ଼ ଆରେଇଲା । କେତେଟା ବରଷ ପରେ ତାଙ୍କ ରାଇଜରେ ଆଉ କେହି ନିରକ୍ଷର ରହିଲେ ନାହିଁ । ତାଡ଼ି ଖଟି ସବୁ ଉଠିଗଲା । ଗାଁ ଗାଁ ଭାଗବତ ଘର ବସିଲା । ସେଠି ନିତି ସନ୍ଧ୍ୟାରେ ବାହ୍ମଣ ପୋଥି ବୋଲିଲେ । ଗାଁବାଲା ଆସି ଶୁଣିଲେ । ଆଗକାଳର ରାମ, ଲକ୍ଷ୍ମଣ, ପଞ୍ଚୁପାଣ୍ଡବ ଆଦି କଥା ଶୁଣି ତାଙ୍କ ମନ ବି ଭଲ ହେଲା । ଭାଗବତ ଶୁଣିବାକୁ ବୁଢ଼ାମାନେ ବି ମେଳ ହେଲେ । ବ୍ରାହ୍ମଣଙ୍କୁ କୋଠରୁ ଖଞ୍ଜା ଆଉ ବରତନ ମିଳିଲା । ସେହିଠି ପାଞ୍ଚ ପଞ୍ଚୁ ନ୍ୟାୟ ନିଶାପ କଲେ । ସେମିତି ପଠାଣସାହିମାନଙ୍କରେ ଗୋଟିଏ ଲେଖା ପଠାଣୀ ମୋଖତାବ୍ ବସିଲା । ସେଠି ପଠାଣ ପିଲାଏ ମୌଲବି ପାଖରେ ଉର୍ଦ୍ଦୁ ଆରବୀ ପଢ଼ିଲେ । ସେହି ମୌଲବି ପୁଣି ତାଙ୍କୁ କୋରାଣ ପଢ଼ି ଶୁଣାଇଲେ ।

ପ୍ରତି ଗାଁରେ ଗୋଟିଏ ଖେଳ ଆଖଡ଼ା ହେଲା, ସେଠି ନିତିନାଁ ଶନିବାର ରବିବାର ଗାଁ ପିଲାଏ ଖେଳ ଦେଖେଇଲେ । କୁସ୍ତି ନଢ଼ିଲେ । ଜମିଦାର ପ୍ରଜାଙ୍କ ମନ ନବାରୁ ପ୍ରଜା ବି ପାଞ୍ଚ କାମରେ ତାଙ୍କ ସାହାପକ୍ଷ ହେଲେ । ସାଆନ୍ତେ ଗାଁ ଗାଁରେ ଗୋଟିଏ ସାଧାରଣ ଚାନ୍ଦା ଖାତା ଖୋଲି ସେ ଗାଁର ପାଞ୍ଚ ଭଲଲୋକ ହାତରେ ସମର୍ପି ଦେଲେ । ସେଥିରେ ସେ ଗାଁର ଉନ୍ନତି ସକାଶେ ଯେ ଯାହା ସ୍ୱଚ୍ଛମନରେ ଦେଲା ସେହି ପାଞ୍ଚ ପଇସା ରହିଲା । ଗାଁରେ କୂଅ ଖୋଳା ହଉ, ଗରୀବ ଦୁଃଖୀ ସକାଶେ ହଉ, ରୋଗ ବଇରାଗ ସକାଶେ ହଉ ସେଇ ପାଣ୍ଠିରୁ ଖରଚ ହଉଥିଲା । କାହା ଘରେ ନିଆଁ ଲାଗିଗଲା । ତା'ର ସର୍ବସ୍ୱ ପୋଡ଼ି ଜଳିଗଲା । ସେ ସେହିଥିରୁ ଘର ବନେଇବାକୁ ଟଙ୍କା ସାହାଯ୍ୟ ପାଇଲା । ଗାଁ ଗାଁ ପୁଣି ଅରଟ ଘର ବସିଲା । ଲୋକେ ସେଠି ସୂତାକାଟି ଶିଖିଲେ । ଖାଲି ଏତିକି ନୁହଁ, ମାଇପି ଲୋକେ କେମିତି ଭଲ ହେବେ ଏ କଥାରେ ସାଆନ୍ତଙ୍କର ଭାରି ଚିନ୍ତା ଥାଏ । ହିନ୍ଦୁଘରେ ପଠାଣ ଘରେ ତ ଭାରି ପରଦା । ସେ ତ ପଦାକୁ ବାହାରି ପାରିବେ ନାହିଁ । ଦେଶ ଚିନ୍ତା ତାଙ୍କୁ ପୁଣି କିଆଁ ଲାଗିବ ? ହେଲେ ସାଆନ୍ତେ ଗୋଟାଏ ଉପାୟ କଲେ । ଭାବିଲେ, ନାହିଁ ମାମୁଁରୁ କଣା ମାମୁଁ ଭଲ । ଦିନେ ରତନୀକି ପାଖରେ ବସେଇ ମନକଥା କହିଲେ । କହିଲେ ଦେଖ ମୁଁ ସିନା ମରଦ ପୁଅଙ୍କ ସକାଶେ ବାର କଥା କରିବି । ଝିଅଙ୍କ କଥା ତମ ଦିହିଙ୍କି ଲାଗିଲା । ତେମେ ସବୁ ଗାଁ ସ୍ତିରୀଙ୍କି ଆପଣା ଉଆସକୁ ପାଲିଙ୍କି ପଠେଇ ସମିଏ ସମିଏ ଆଣି ତାଙ୍କ ସାଙ୍ଗେ କଥା ଭାଷା ହୁଅ । ଗ୍ରାମୋଫୋନ୍ ବଜେଇ ତାଙ୍କୁ ଶୁଣାଅ । ପୁଣ୍ୟ ପର୍ବଦିନ ବଡ଼ ଘର ବୋହୂ ଝିଅଙ୍କୁ ନିମନ୍ତ୍ରଣ କର, ତାଙ୍କ ସାଙ୍ଗେ ପାଞ୍ଚ କଥା ହୁଅ । ସେହିମାନେ ଭଲ ହେଲେ ଆମ ଦେଶଟା ଭଲ ହେବ ।''

ବାବୁଙ୍କ କଥାରେ ରତନୀ ମହା ଆନନ୍ଦ ହେଲା । ସେଠୁ ସେ, ଉମା ଆଉ ଉତ୍ତମା ମିଶି ସନ୍ଧ୍ୟାରେ ଗାଁ ସ୍ତିରୀଙ୍କି ଆଣି ଗ୍ରାମୋଫୋନ୍ ଶୁଣାଇଲେ । ସେଠୁ ବସି ପାଞ୍ଚକଥା ପକେଇଲେ । କଥା ଭିତରେ ତାଙ୍କୁ ନାନା ଶିକ୍ଷା ଦେଲେ । ଆପଣା ଦେଶ କେମିତି ଭଲ ହବ, ଲୋକେ ଆପଣା

ଦେଶ ଚିନ୍ତା ବେଭାର କଲେ କଣ ଫଳ ହବ ସେ ସବୁ କହିଲେ ।

ଦିନେ ମହାପାତ୍ର ଘର ବୋହୂ ଝିଅ ଆସିଥାନ୍ତି ଗ୍ରାମୋଫୋନ୍ ଶୁଣି । ସେମାନେ ଜାତି ବଡ଼ଲୋକ, ଜାତିରେ ବ୍ରାହ୍ମଣ । ଆଉ ତାଙ୍କ ଘର ପୁଅମାନେ ବଡ଼ ଚାକିରିଆ । ସେମାନେ କୃଷ୍ଣବାବୁ ଘରକୁ ଚଷା ବୋଲି ପଛାଡ଼େ ଟାପରା କରନ୍ତି । ସେଦିନ ତାଙ୍କ ବୋହୂମାନଙ୍କୁ ଦେଖି ଆଗ ଖୁବ୍ ଗୋଡ଼ାଏ ହସିଲେ । ଏ ତାର ସେ ତାର ଆଖି ଠରାଠରୀ ହେଲେ । କଥା କଣ ନାଁ ଏମାନେ କେଡ଼େ ଭେସେଡ଼ା ମୋଟରା ଖଦିଲୁଗା ସବୁ ପିନ୍ଧିଛନ୍ତି । ''ତାଙ୍କ ହସ ତାଙ୍କ ଢଙ୍ଗରେ ରତନୀ ମନେ ମନେ ଦୁଃଖହୋଇ କହିଲା, ''ମାଉସୀ, କି କଥା ଦେଖି ହସିଲ ?'' ମାଉସୀ ହଉଛନ୍ତି ମହାପାତ୍ରଙ୍କ ଭାରିଯା । ସେ କହିଲେ, ''ତେମେ ସବୁ ଯୋଉ ଅଖା ପିନ୍ଧିଚ, ତାକୁ ଦେଖି ଆମେ ହସିଲୁ । ଯାକୁ କେମିତି ବୋହିଚ, ଚମ ଛିଣ୍ଡି ଯାଉଥିବ, ଅଣ୍ଟା କାଟି ହୁଏ ନାହିଁ ?'' ରତନୀ ସରଳ, ସେ କହିଲା, ''ଆମେ ଜାତି ଚଷା, ଆମ ଚଉଦ ପୁରୁଷ ମୋଟ ଖଦି ପିନ୍ଧି ଆସିଛନ୍ତି । ଏ ହେଲା ଆମ ବାରି କପାରୁ ତିଆରି । ମୁଁ ନିଜେ କାଟିଚି । ଆମେ ଲାଜ ଘୋଡ଼େଇବା ପାଇଁ ପର ଦୁଆରକୁ ଯିମୁଁ କିଆଁ ?

ମାଉସୀ ବିଦ୍ରୂପରେ ହସି ଦେଇ କହିଲେ, ''ଏବେ ବୁଝିଲି ତମେ ସବୁ ନନାଙ୍କ ଅପରସନ ହେଇଁତ । ହେଲେ ମୁଣ୍ଡ ବାଡ଼େଇ ଦେଲେ ବି ଆମ ଦି'ହାତରେ ଏ ମୋଟ ଖଦି ଚଳିବ ନାହିଁ । ମାଁ ଲୋ ଦେହ ଲସେଇ ପଡ଼ିବ ।''

ଉମା ଥିରଭାବରେ କହିଲା, ''ମୁଁ ବି ଆଗରେ ସେହିକଥା କହୁଥିଲି ମାଉସୀ, ହେଲେ ଆଜିକାଲି ସୁଖରେ ମୋଟା ପିନ୍ଧୁଛି । ବିଲାତୀ ଲୁଗା ଖଣ୍ଡେ ମୋ, ପେଡ଼ିରେ ପାଇବ ନାହିଁ ।''

ଉମା ଭାରି ଖାନଦାନ୍ ଘର ଝିଅ । ତା'କଥା ଶୁଣି ମାଉସୀ ଆଉ କିଛି କହିଲେ ନାହିଁ ।

ସେମିତି ସେଦିନ ପଟ୍ଟନାୟକ ଘର ଆସିଥାନ୍ତି । ତାଙ୍କ ବଂଶର ସ୍ତ୍ରୀମାନେ ପରଚର୍ଚ୍ଚା ପରନିନ୍ଦାକୁ ସମ୍ଭଳ କରି ବୁଲନ୍ତି । ଯେ ଉଠି ବସିଲେ ସେଠି ପରଚର୍ଚ୍ଚା ପରଘରର ପାଞ୍ଚକଥା । ଗଲା ଝିଅରୁ ବୋହୂରୁ, ଶାଶୁ ପର୍ଯ୍ୟନ୍ତ; କେହି କାହାକୁ ଊଣା ନୁହନ୍ତି । ସେମାନେ ଭାବିଥିଲେ ଯାଙ୍କ ଘର ବି ସେହିପରି ହେଇଥିବେ । କଥା ପଡୁ ପଡୁ ପଟ୍ଟନାୟକ ଭାରିଯା ସୁଲକ୍ଷଣା କହିଲେ, ହଇକିଏ, ଶୁଣିଚ ତମେ ସବୁ ଦୋପଟି ଜଗମୋହନ ଝିଅ କଥା ! ସେ ପରା ରାତି ରାତି ଲୁଚି ଶାଶୁ ଘରୁ ପଳେଇ ଆଇଚି ।'' ରତନୀ ଉତ୍ତର କଲା, ଆମ ଚିନ୍ତା ଆମକୁ ଗରୁ, ପରଘର ଚିନ୍ତାରେ ଆମକୁ କି ମିଳିବ ? ମୁଁ ଶୁଣିଯାଏନାଁ ସେ ସବୁକଥା । ସୁଲକ୍ଷଣା ଟିକେ ଅପ୍ରସ୍ତୁତ ହେଇ କହିଲେ, ''ତମର ସବୁ ଚିନ୍ତା କ'ଣ ବା ! ପୋଲାରେ ଖାଇ ମେଲାରେ ଶୋଉଚ ଅଣ୍ଡିରାଙ୍କଦେରେ ବାହାରେ ବୁଲୁଚ, ବାଜଣା ବଜଉଚ, ନାଟତେମସା କରୁଚ ।'' ରତନୀ ଏକଥା ଶୁଣି ମନେ ମନେ ବିରକ୍ତ ହେଲା । ହେଲେ ଆପଣାକୁ ସମ୍ଭାଳି ନେଇ କହିଲା' ନାନି ! ଆମେ ଅଣ୍ଡିରାଙ୍କଦେରେ ପଦାକୁ ବାହାରୁ ସତ, ସେଥିରେ ପାଞ୍ଚ ଭଲ କାମ ହଉଚି । ଗରିବଗୁରୁବା ଘରକୁ ଯାଇ ରୋଗୀ ଦୁଃଖୀଙ୍କି ଦେଖୁ, ପ୍ରଜାଙ୍କ ହାନିଲାଭ ବୁଝୁ, ହେଲେ ଘରେ ବସି ପରଚର୍ଚ୍ଚା ଆମକୁ ପୋଷାଏ ନାହିଁ । ପର ପରମେଶ୍ୱର, କହନ୍ତି ନେଇଁ ପରନିନ୍ଦା ନର୍କେବାସ । ବାହାରେ ଭଲ କହିଁନୁ, ଦ୍ୱି

ଶୁଣିଲା ବାଲା ଦୋଷ୍, କହିଲାବାଲା ଦୋଷ୍ ।'' ପଟ୍ଟନାୟକ ଭଉଣୀ କଳାବତୀ ରତନୀ କଥାଶୁଣି ବାଆଁରେଇ ହେଇ କହିଲେ, ''ହଁ ସେ କଥାରୁ କି ଖାଇବ । ଏ ବୋହୂଟା ବଡ଼ସରଳିଆ, ତା'ପେଟରେ କଥା ରହେନା । ତା'ର ଛାଗା ଅଛାଗା ନାହିଁ । ଛାଡ଼ ଛାଡ଼ ସେ କଥା । ହଇକିଏ ହେମବୋଉ, ତମ ଘରେ କୁଆଡ଼େ ଆପଣା ହାତରେ ସୂତା କାଟୁଚ ସବୁ । ଏତେ ସୂତା କ'ଣ କର ?'' ରତନୀ ହସି ହସି କହିଲା, ସୁଖ ଲାଗେ କାଟୁ, ତନ୍ତିକି ଦେଇ ଲୁଗା ବୁଣେଇ ପିନ୍ଧୁ, ଖଦି ଭଣ୍ଡାରମାନଙ୍କୁ ଆମର ସୂତା ଚାନ୍ଦା ଯାଏ ।'' ପଟ୍ଟନାୟକ ମାଁ ବୁଢ଼ୀ ଯଶୋଦାମଣି କହିଲେ, ''ହଁ, ଏଇ ମୋଟ ନୁଗାରେ ଏକା ଗାନ୍ଧି ମହାତ୍ମା ଦେଶ ଉଦ୍ଧାର୍ କରି ପକେଇବ ? ମୋର ବିଶ୍ୱାସ ନାହିଁ । ଯୋଉଁ ଅଖାଦେରେ ହେଇଁଚି, କେମିତି ସମାଳିଚ ଆଗ ।''

ଉତ୍ତମା କହିଲା, ଆମର ଅଭ୍ୟାସ ହେଲାଣି, ଅଖାହଉ କନ୍ଥାହଉ ଆମ ଦେଶରେ ଯେତେବେଳେ ସବୁ ଲୁଗା ନାହିଁ । ଆମେ କୋଉଠୁ ଆଣି ମୁଁ ? ଯେ ଦେଶେ ଯାଇ, ସେ ଫଳ ଖାଇ ।'' ପଟ୍ଟନାୟକ ସାନଝିଅ ଚନ୍ଦ୍ରାବତୀ ଆଶ୍ଚର୍ଯ୍ୟ ହେଇ କହିଲା, ''କିଆଁ ଏଇ ମୁଁ ତ ସବୁନୁଗା ପିନ୍ଧିଚି, ଦୋକାନରେ ଯାହାକୁ ଯେତେ ।'' ଉମା କହିଲା, ସେ କଣ ଆମଦେଶ ନୁଗା ? ସେତ ଅନ୍ୟ ଦେଶରୁ ଆଉଚି, ଆମ, ପେଡ଼ି ପଇସା ଦେଇ ଆମେ କିଆଁ ପରଲୁଗା କିଣିମୁଁ ? ରମା କହିଲା, ସେଥିରେ ହେଲା କଣ, ନୁଗା ତ ପିନ୍ଧିବ, ଆମ ଦେଶ କ'ଣ ତମ ଦେଶ କ'ଣ । ଆମ ଦେଶ ନୁଗାରେ କ'ଣ ପଇସା ଖର୍ଚ୍ଚ ନୁହେଁ ?

ରତନୀ କହିଲା, ଖଦିରେ ତ ବେଶି ଖରଚ । ଖରଚ ସକାଶେ କିଛି କଥାନାହିଁ । ପଇସାଟା ଆମ ଦେଶରୁ ଯାଇ ବିଦେଶରେ ରହୁଛି । ଆମେ ପରା ଦରିଦ୍ର ହଉଚେଁ, ଓଳିଏ ଖାଇବାକୁ ପାଇଲେ ଆଉ ଓଳିକି ଦାନା ନାହିଁ । ଖାଲି କଣ ନୁଗା, କାଚ କୁହ, ସିନ୍ଦୂର କୁହ, ଚିନି କୁହ ନୁଣ କୁହ, ଛୁରୀ କୁହ, କଇଁଚି କୁହ, ନିଆଁ କାଠି ଆଦିକରି ଆମକୁ ପରା ପର ଦୁଆରେ ହାତ ପକେଇ ଆଣିବାକୁ ହଉଚି । ହାତ ପତେଇଲାଠୁ ହୀନ ଅଛି ? ଆମ ବାବୁଙ୍କର ଏ ସବୁ ଶିକ୍ଷା !

ବୁଢ଼ୀ ଯଶୋଦାମଣି କହିଲେ, ''ତମପାଠ ତେମେ ବୁଝ, ହେଉ ଲୋ ମାଁ ତେମେ ଏକା ଦେଶ ଉଦ୍ଧାର କରି ସ୍ୱରଗ ଯିବ, ଆମେ ନର୍କରେ ପଡ଼ି ଘାଣ୍ଟି ହମୁଁ ।''

ତାଙ୍କ ପଣ୍ଡିତ କଥା ଶୁଣି ତାଙ୍କ ଝିଅ ଗୁଲବଦନୀ କହିଲା, ''ବାବା ଗାନ୍ଧି ନୁହନ୍ତି, କି ଦିଅଁ ଦେବତା ନୁହନ୍ତି, ଆମେ କଥାଟା ଭଲ ବୋଲି ମାନିମୁଁ ସତ, ହେଲେ ଏଡ଼ିକି ମୋଟରା କନ୍ଥା ଦିହରେ ଦେଇ ସମ୍ଭାଳି ପାଇଲେ ତ ହବ । ମୁଁ ତ ଗରମରେ ମୂର୍ଚ୍ଛାଯିବି । ମୋ ଦି'–ହାତରେ ତା' ଟଳିବ ନାହିଁ । ତା' କଥା ଶୁଣି ଏମାନେ ତୁନି । ଆଉ କହିବେ କଣ ?

ଏମିତି କିଛିଦିନ ଗଲା । ପଠାଣଙ୍କ ଇଦ୍ ପଇଲା । ସେଥର ପଠାଣ ସାହିରେ ସଭିଏଁ ଗୋରୁ କୋରବାଣୀ କରିବା ଲାଗି ଠିକଣା କରିଥାନ୍ତି । ହିନ୍ଦୁ ଟୋକାଙ୍କ କାନରେ ଏକଥା ପଡ଼ିଗଲା । ପଠାଣ ଯେତେବେଳେ ଗାଈ ବେକରେ ଫୁଲମାଳ ହାରିକା ପକେଇ ମହାମଉଛବ କରି କୋରବାଣୀ ଥାନକୁ ଯାଉଛନ୍ତି, ଭେଟିଲେ ତ ତାଙ୍କୁ ଏ ପଞ୍ଚାକ । ସେଠୁ ଲାଗିଲା ଦି'ପକ୍ଷର ଭାରି ପିଟାପିଟି, ମାଡ଼ଗୋଳ । ତାଙ୍କ ହୋ ହୋ ଘୋ ଘୋରେ ଦାଣ୍ଡ କମ୍ପି ଯାଉଥାଏ । ମାଇପେ

## * ଚିଲ୍କାଚିଠି (୭)

### (ଅସ୍ପୃଶ୍ୟତା ନିବାରଣ)

ସମ୍ପାଦକ ମହାଶୟ,

ସାଦର ନମସ୍ତେ ।

ବହୁତ ଦିନ ପରେ ପୁଣି ଆପଣଙ୍କ ସହିତ ସାକ୍ଷାତ କରି ଦୁଃଖସୁଖ ଦୁଇପଦ ହବାକୁ ମନ ବଳିଚି, ଦୁ ା ତ ସବୁଦିନେ ଏକାଭଳି ଯାଏ ନାହିଁ । ବହୁତ ମଡ଼ା ଚକଟା, ଘଣ୍ଟା ଗୋଳା ହୋଇ ଏ ଗ୍ୟ ତିଆରି ହୁଏ । ହିନ୍ଦୁ ଜାତିର ଭାଗ୍ୟ ବି ଠିକ୍ ସେହିପରି । କେହି ଗଣକ ଯଦି ତା ଜାତକଟା କଷି ଦେଖନ୍ତା, ବୋଧହୁଏ କହନ୍ତା ଯେ, ତାର ଶନିଦଶା ପଡ଼ିଚି । ନଇଲେ ସମସ୍ତେ ତାଠୁ କାଟି ଛାଣି ଅଲଗା ହବାକୁ ବସନ୍ତେ ? ଭାରତୀୟ ବୋଇଲେ ଯେଉଁ ପଇଁତିରିଶ କୋଟି ଲୋକଙ୍କୁ ଆମେ ବୁଝୁ, ଏକାମାଟିରେ ଜନ୍ମ ହୋଇ ଏକାଭୂଇଁରେ ବଢ଼ିକୁଦି ମଣିଷ ହେଉ, ଏକା ଅନ୍ନରେ ପାଳି ନାଳି ହେଉ, ସେଇ ପଇଁତିରିଶ କୋଟି ଭଲା ଯଦି ପ୍ରକୃତ ମନପ୍ରାଣ ଦେଇ ଏକା ହୋଇଯାନ୍ତେ, ତା ହେଲେ ଦୁନିଆ ଦାଣ୍ଡରେ ଏତେ ଲୋକହସା, କାଉନ୍‌ସିଲ୍ ଆସେମ୍ବ୍ଲିରେ ଚଉକି ବେଞ୍ଚ ଟଣାଟଣି ଭିଡ଼ାଭିଡ଼ି ଲାଗି ନଥାନ୍ତା । ଆପଣା ଦେଶର ଯୋଗ୍ୟ ଲୋକେ ପାଞ୍ଚ ପଞ୍ଚୁରେ ବସି ନିର୍ବିବାଦରେ ଦେଶର ସବୁ କଥା ବୁଝାସୁଝା କରି ଯାହା ଦେଶର ସମସ୍ତଙ୍କ ପାଇଁ ଭଲ ତା କରୁଥାନ୍ତେ, କିନ୍ତୁ ମଝିରେ ବିଖଡ଼ କାଢ଼ି ନାଟ ଦେଖିବା ଲୋକ ବି ତ ଅଛନ୍ତି । ଆମେ ମୂର୍ଖ, ତାଙ୍କ କୂଟ କପଟ ବା କାହୁଁ ବୁଝିବୁ ? ଆମେ ଯେଝା ହାଣ୍ଡି କୁଣ୍ଡେଇ ହେଁଷ ମସିଣା, ପେଡ଼ିପେଟରା ଭିନେ ଭିନେ ଠା' ଠା' କରିବାକୁ ବସିଲୁଣି । ପଠାଣ ମିଆଁ ଭାଇଙ୍କର ତ ମୂଳରୁ "ମେରି ମୁର୍ଗୀକା ଏକ ଟାଙ୍ଗ", ଏବେ ଶିଖ ଭାଇ, ଅଛୁତ ଭାଇ, ଖ୍ରୀଷ୍ଟିୟାନ ଭାଇ, ସେ ବି ଭାଗ ଭାଗ ହୋଇ ହିନ୍ଦୁ ଜାତିର ଗଣ୍ଡିଟାକୁ ଗୋଡ଼ ହାତକଟା ଖଣ୍ଡିଆ ଜଗନ୍ନାଥରେ ପରିଣତ କରିବାକୁ ବସିଲେଣି । ଏକା ଘରେ ଏତେ ବାଡ଼ ହେଲେ ଶେଷକୁ ଦଶାଟା କଣ ହବ, ଏକଥା ଧର୍ମଧ୍ୱଜାଧାରୀ ଦ୍ୱିଜାତି ପ୍ରବରମାନେ ଟିକେ ଭଲ କରି ମନରେ ପୂରେଇ ବିଚାର କଲେଣିଟି, ନା ଆପଣା ଜାତି ଅଭିମାନରେ ଆକାଶରେ ଅଟ୍ଟାଳିକା ତୋଳି ବସିଚନ୍ତି ?

ସତ କଥା ସମ୍ପାଦକ ଭାଇ, ଏ ବଡ଼ ଜୁଲମ୍, ହିନ୍ଦୁପଣିଆ ଉପରେ ଏ ବଡ଼ ଜୁଲମ । ଅଛୁତଗୁଡ଼ା ମୁଣ୍ଡ ଟେକିବା ହେଉଚି ମହାପାପ । ରାଜା ରାମଚନ୍ଦ୍ର ଯୁଗ ହୋଇଥାନ୍ତା ତ ଏମାନେ ଦେଖିଥାନ୍ତେ ଶୂଦ୍ରକ ବେଦ ପଢ଼ିଲା ମାତ୍ରେ କେମିତି ମୁଣ୍ଡ କାଟ ହୋଇଥିଲା । ଏବେ ପରା ରାମ ରାଇଜ ନାହିଁ, ନଇଲେ ଯେ ଆମ୍ବେଦକର ଦଳିଆଙ୍କର ଏକାବେଳେ ସଫା ଚୋଟ୍ ମୁଣ୍ଡ କାଟ୍ ହୋଇ ତାଙ୍କ ଅପବିତ୍ର ଅସାର ଦେହକୁ ଚିଳ ଶାଗୁଣାଙ୍କର ସୁଭକ୍ଷ୍ୟ କରାଇ ପାରିଥାନ୍ତା । ତାଙ୍କର ଏଡ଼େ ଗର୍ବ, ସେମାନେ ପୁଣି ବର୍ଣ୍ଣ ଶ୍ରେଷ୍ଠଙ୍କର ସରିସାଙ୍ଗ ହବାର ଆଶା କରୁଛନ୍ତି ? ଆରେ ବାବୁ, ଯଦି ଜନ୍ମ ଜନ୍ମାନ୍ତର ପାପ କରି ଅଛୁଆଁ ହେଲ, ହାଡ଼ି ପାଣ ହୋଇ ପିଣ୍ଡ ଧାରଣ କଲ, ତୁମର ପୁଣି ସରଗଚାନ୍ଦକୁ ହାତ ବଢ଼େଇବାର ସଇତାନି କାହିଁକି ? ଯେତେ ହେଲେ ଆମେ ଦ୍ୱିଜାତି, କେତେ ଲକ୍ଷ ଜନ୍ମ ତପସ୍ୟା କରି "ଜମ୍ବୁଦ୍ୱୀପେ ଭାରତ ବର୍ଷେ" ବର୍ଣ୍ଣଶ୍ରେଷ୍ଠ ବ୍ରାହ୍ମଣ, କ୍ଷତ୍ରିୟ ଆଦିଙ୍କ ଘରେ ଆମର ଶୁଭଜନ୍ମ ଲାଭ ହୋଇଚି । ପଛେ ଆମେ ପାଠର 'ଅ' ଅକ୍ଷର ନ ଜାଣୁ କି

ଦାନ୍ଦଡ଼ା କଟୁରି ଖଣ୍ଡେ ଧରିବାର ସାହସ ଆମର ନ ଥାଉ, ଦୁନିଆଯାକ ଆମକୁ ଛି' ଛା' କରୁ, ଟାହୁଲି ଟାପରା କରୁଥାନ୍ତୁ – "ନବଗୁଞ୍ଜର, ଆପଣା ମନେ ମୁଁ ଆପେ ସୁନ୍ଦର" – ଆମେ ବର୍ଣ୍ଣଶ୍ରେଷ୍ଠ ହିନ୍ଦୁ । ଆମରି ପାଇଁ ପରା କବି ଗାଇଛନ୍ତି –

"ସର୍ବ ବର୍ଣ୍ଣେ ଶ୍ରେଷ୍ଠ ପ୍ରତିଷ୍ଠ ଧର୍ମନିଷ୍ଠ ହିନ୍ଦୁ"– ଆମେ ସବୁ ଧର୍ମର ଦେହଧାରୀ ବିଗ୍ରହ । ଦୁନିଆ ଯାକର ଧର୍ମ ଆମର ପ୍ରତି ରୁମମୂଳରେ ଗଦାମରା ହୋଇଚି । ଆମେ ଜଗତରେ ଧର୍ମଗୁରୁ । ଆମେ ଖାଇଲେ ଧର୍ମ, ବସିଲେ ଧର୍ମ, ଶୋଇଲେ ଧର୍ମ, ହସିଲେ ଧର୍ମ, କାଶିଲେ ଧର୍ମ, ଧର୍ମର ଆମର କିଛି ସୀମା ଅଛି ? ଧର୍ମ ସକାଶେ ଆମେ କଣ ନ କରିପାରୁ ? ଧର୍ମ ସକାଶେ ତ ଆମର ଏତେ ଚିତା ପଇତା, ଚୁଟି ଚୈତନ୍ୟ, ଛାପ ଜପାମାଳି । ଧର୍ମ ସକାଶେ ତ ଏତେ ବାରବ୍ରତ, ଓଷା ପାର୍ବଣ, ପୋଥି, ପାଞ୍ଜି, ପୁରାଣ । ଧର୍ମ ସକାଶେ ତ ଗଙ୍ଗା ଯମୁନାର ମଇଳା, ମଡ଼ପଚା, ଗୋଳିଆ, ଗନ୍ଧପାଣିରେ ଗାଧୋଇ ମହାପବିତ୍ର ହୋଇ, ସାତଜନ୍ମର ଚୋରୀ, ବ୍ୟଭିଚାର, ନରହତ୍ୟା, ଭ୍ରୂଣହତ୍ୟା ପାପରୁ ତ୍ରାହି ପାଉଛୁ । ଧର୍ମ ସକାଶେ ତ ପାଞ୍ଚବର୍ଷର ଅଜ୍ଞାନ ଶିଶୁ ବାଳିକାକୁ ଧୂଳି ଖେଳରୁ ଧରିଆଣି ପାକଲା ବୁଢ଼ା ବରଗଡ଼ାର ହାତରେ ବନ୍ଧ ଗଣ୍ଠି ପକେଇ ଦଉଚୁ । ଧର୍ମ ସକାଶେ ତ ଆମେ ନବଯୌବନା ସଜ ଗୋଲାପ କଢ଼ିଟିମାନଙ୍କୁ ରାଣ୍ଡ ଅର୍କ୍ଷିତିଆଣୀ କରି ବଡ଼ଦାଣ୍ଡରେ ବସେଇ ମାତାଜୀ ସଜେଇ ଦେଉଚୁ, ନଇଲେ ଆମର ଦେବତାଙ୍କୁ ବାହା କରେଇ କୁମାରୀ କନ୍ୟାଙ୍କୁ ଦେବଦାସୀ ରୂପେ ମଠଧାରୀ ମହନ୍ତ ପୂଜା ପଣ୍ଡା ସେବକ ସେବେଇତଙ୍କ ଆଗରେ ନଚଉଚୁ । ଏଇ ଧର୍ମସାଧନ ସକାଶେ ତ ଗାଁ ଗାଁ, ସହର ସହର, ଘାଟ ତୁଠରେ ମାଳେ ମାଳେ ମନ୍ଦିର ମଠ ପୀଠ ଗଢ଼ି କରି ରଖିଚୁ । ଆରେ ମ୍ଳେଚ୍ଛଗୁଡ଼ା । ତୁମକୁ ତା ସବୁ କିମିତି ଛାଡ଼ି ଦେବୁ ? ଯାହା ଆମର ଜନ୍ମ ଜନ୍ମାନ୍ତର ସୁକର୍ମ ଅର୍ଜିତ, ଆଜି ଗାନ୍ଧି ଗୋଟିଏ ଉପାସ କଲେ ବୋଲି "ଆମେ ସର୍ବେ ହୋଇଯିବୁ ଏକାକାର, ନ ଥିବ ଭେଦର ବିଚାର" – ତେବେ ଭଲା ଆମର ରବିତଳେ ନା ରସାତଳେ, ଗଉରବ ଗର୍ବ କରିବା ପାଇଁ କି ପଦାର୍ଥ ରହିବ ? ଦୁନିଆ ଦାଣ୍ଡରେ ମୁଣ୍ଡ ଟେକି ବାଟ ଚାଲିବା ପାଇଁ ଅଭିମାନଟା ରହିବ କଉଁ ଲାଜରେ ? ଜଗତର ଅନ୍ୟ ଦେଶର ଲୋକେ କିମିତିକା ତାଟକା ହେଇ ଶୁଣିବେ ଯେ, ବ୍ରାହ୍ମଣ ଠାରୁ ଏକୋଇଶ ହାତ ଦୂର ଛଡ଼ାରେ ଶୂଦ୍ର ଚାଲୁଚି । ତା ଛାଇଟା ପଡ଼ିଲାକ୍ଷଣି ବ୍ରାହ୍ମଣ ରୂପୀ ନର ଦେବତାର ଚମ ଅପବିତ୍ର ହୋଇ ଯାଉଚି ? ଭଲା, ଯେ ବ୍ରାହ୍ମଣ ସେ ଚିରଦିନ ବ୍ରାହ୍ମଣ "ବ୍ରହ୍ମ ଜାନାତି ବ୍ରାହ୍ମଣ" ବା "ରାନ୍ଧି ଜାଣନ୍ତି ବ୍ରାହ୍ମଣ" ପୂଜାହାରୀ ଅଥବା ପୂଝାରୀ । ଆମ୍ଭର ଅନ୍ନ ଯୋଗାଡ଼ କରିବେ ନଇଲେ ପେଟର ଅନ୍ନ ମୁଠାଏ ସିଝେଇ ଦେବେ । ପାଠ ପଢ଼ି ପଢ଼ି ପଣ୍ଡିତ ବା ବ୍ରାହ୍ମଣ ପେଟରୁ ପଡ଼ି ପଣ୍ଡିତ । ପଛେ ଟିପ ଚିହ୍ନଟାଏ ଦବାକୁ ନ ଆସୁ, ବ୍ରାହ୍ମଣ ଯେ ଚିରଦିନ ବ୍ରାହ୍ମଣ ତାର ସ୍ଥାପିତ ବ୍ରାହ୍ମଣ୍ୟ ଧର୍ମରେ । ଗାନ୍ଧି ଭଳି ସାତ ଗାନ୍ଧି ଶଏଦିନ ଉପାସ କରି ମରି ମାଟିରେ ମିଶିଗଲେ ସୁଦ୍ଧା କଣି କାଣିଚାଏ ଭାଙ୍ଗିବ ନାଇଁ କି ଦୁଙ୍କିବ ନାଇଁ – ସେ ଯାହା ଆଗରୁ ବିଧି ବ୍ୟବସ୍ଥା ହୋଇଚି ନାଁ । ବ୍ରାହ୍ମଣ, ବ୍ରାହ୍ମଣ-ଶୂଦ୍ର, ଶୂଦ୍ର, ମ୍ଳେଚ୍ଛ, ମ୍ଳେଚ୍ଛ – ଛୁଆଁ ଛୁଆଁ – ଅଛୁଆଁ ଅଛୁଆଁ । ଅଛୁଆଙ୍କୁ ପଙ୍ଗତରେ ପୂରେଇ ମାରାହବା ଭଳି କ୍ଷମତା ଆମର ନାହିଁ । ସେ ଗାନ୍ଧି କହନ୍ତୁ କି ସ୍ୱୟଂ ଭଗବାନ କହନ୍ତୁ । ଗାନ୍ଧି ଏବେ ମାନିଲେ ଗୋଟାଏ ଅବତାର, ଏଇ ଅଛୁତଙ୍କ ସକାଶେ ଓପାସ କରି ମରିଯିବେ । ତା

ହେଲେ ତାଙ୍କ ପାଇଁ ବି ମନ୍ଦିରଟିଏ ଗଢ଼ି ସେଠି ତାଙ୍କ ମୂର୍ତ୍ତି ଥୋଇ ପୁଣି ଏଇ ଅସ୍ପୃଶ୍ୟଙ୍କୁ ବାରଣ କରିବାକୁ ସେଠି ନିଘା ପକେଇବାକୁ । ଆମେ କଣ ଊଣା ? ଆମେ ଖୁବ୍ ପୂଜା କରି ଜାଣୁ, ଅତଏବ ଗାନ୍ଧିଙ୍କ ଆତ୍ମବଳି ଦାନ ବିଫଳ ହେବ ନାହିଁ । ଶ୍ରୀକୃଷ୍ଣ ଏବେ ଜରା ଶଅର ପ୍ରେଷ୍ଟଟା ହାତରେ ମଲେ – ଶଅରଗୁଡ଼ା ତାଙ୍କର ଗୋଟିଏ ନିମ୍ବକାଠରେ ଦେବତା ବନେଇ ପୂଜିବାକୁ ଲାଗିଲେ । ଆମ ଦିହ କିଆଁ ସହନ୍ତା ? ଆମେ ତାଙ୍କ ତାଟି କବାଟ ତାଡ଼ି ତାଙ୍କୁ ଘିନି ଆଇଲୁ, ପତିତପାବନ ଜଗନ୍ନାଥ କରି ଥୋଇଦେଲୁ । ଆଉ ଦେଲୁ ମନା କରି ସେଇ ଅଛୁତ ଭାଇଙ୍କି ତାଙ୍କ ମନ୍ଦିର ପାଖ ମାଡ଼ିବାକୁ । ଜୋର ଯାହାର ରାଜ୍ୟ ତାର । ହେଲେ ବଡ଼ ଭୟ ହେଲାଣି । ସତରେ ଏ ତ ସାତଜନ୍ମ ଗୋଡ଼ଦଳା ଗୁଡ଼ା, ମୁଣ୍ଡ ଟେକିବେ ଆଉ ସାହସ କରି ପଚାରିବେ ତୁମେ କିଏ ସବୁ ଆମକୁ ଏଡ଼େ ହୀନ କରି ବିଲେଇ କୁକୁରଙ୍କଠୁ ବି ଊଣା କରି ରଖିଚ ? ଭାଇ ଏତ ତମର ମଙ୍ଗଳ ପାଇଁ କରୁଚୁ । ହାତର ସବୁ ଆଙ୍ଗୁଳି କଣ ସମାନ – ନା ? ସମସ୍ତେ ଯୋଗୀ ହେଲେ ଭିକ କିଏ ଦବ ?

ସମ୍ପାଦକ ଭାଇ, ସତରେ ଭାରି ଭୟ ହେଲାଣି । ଏ ଅଛୁତଗୁଡ଼ା ଆଉ ମାନିବା ଜନ୍ତୁ ନୁହନ୍ତି । ଏତ ଆଖି ରଙ୍ଗେଇ ମୁଣ୍ଡ ସଳଖେଇ ଆପଣା ହକ ଦାବୀ କରିବାକୁ ବସିଲେଣି । ଗଲା, ହିନ୍ଦୁ ଧର୍ମଟା ରସାତଳକୁ ଗଲା । ଏ (depressed untouchable) ଗୁଡ଼ା ପୁଣି ଆମକୁ (press) କଲେଣି, ହକ ତାଙ୍କୁ ଛାଡ଼ିଦେବାକୁ । ଭୟ ହଉଚି, ପଛପଟିଆ ଓଡ଼ିଆଙ୍କ ହାତରୁ ମୁକ୍ତିମଣ୍ଡପ ପିଣ୍ଡାରୁ କୋଉ ଦିନ କେଜାଣି ଜଗନ୍ନାଥଙ୍କ ଉପରେ ବି ଆକ୍ରମଣ କରି ତାଙ୍କୁ ଛଡ଼େଇ ନେବେ, ଆମକୁ ଚୋର ବୋଲି ଦୁନିଆ ଦାଣ୍ଡରେ ଚିହ୍ନେଇ ଦେବେ । ଭାଇ ଓଡ଼ିଆ ! ଆଗରୁ ସାବଧାନ ହୋଇ ତାଙ୍କ ମାଲ ତାଙ୍କୁ ଦେଇ ଦିଅ ନା, ନଟ ଛିଡ଼ିଯାଉ । ତୁମେ ତ ସତରେ ଭାରତ ବର୍ଷରେ ଏବେ ସମସ୍ତିଙ୍କର ପଛପଟ ଆଶ୍ରା କରିଚ, ଭଲା ଏଇ କାମରେ ଆଗଭର ହେଇଯାଅ, ସାରା ଭାରତବର୍ଷରେ ଏଇ ସୁଯୋଗରେ ନାଁଟା କିଣିନିଅ, ଏମିତି ସୁଯୋଗ ଆଉ ଆସିବ ନାଇଁଟି ? ତୁମ ଦେଶମିଶ୍ରଣ ହବା ଆଗରୁ ମିଶ୍ରେ ପଂଝାକ ! ଅଛୁତା ଗୋଛେଇତ, ଦୀନା ସାମଲ, କସ୍ତୁରି ମଳିକକୁ କୋଳରେ ଘେନି ମିଶିଯାଅ, ମହାପ୍ରସାଦ ଖୁଆଇ ଜଗନ୍ନାଥଙ୍କ ବାନା ତଳେ ଏକ ହୋଇ ପ୍ରକୃତ ସାମ୍ୟ ମୈତ୍ରୀ ସ୍ୱାଧୀନତାର ପରିଚୟ ଦିଅ ଭଲା । ଏମିତି ସୁଯୋଗ ଆଉ ହାତକୁ ଆସିବ ନାହିଁଟି ? ୟାକୁ ହାତରୁ ଛାଡ଼ିଲେ ପରେ ମୁଣ୍ଡ ପିଟିଲେ ମିଳିବ ନାହିଁଟି । ମତେ ଓଡ଼ିଶାର ଜଣେ କିଏ ଭାଇ ଅଛୁତଙ୍କ ଲାଗି ମୁକ୍ତିମଣ୍ଡପର ପଣ୍ଡିତମାନଙ୍କୁ ହାତ ଯୋଡ଼ି ମନ୍ଦିର ମୁକ୍ତି ପାଇଁ ଭିକ୍ଷା ମାଗିବାକୁ ନେହୁରା ହେଲେ ।

ଭଲା ଏକଥା କହିବ ଟିକିଏ ? ମୁଁ ଟି ? ମୁଁ ଏବେ କୋଉ ଭଲ କି ? ଅଛୁତ ଗୁଡ଼ାକ (depressed, suppressed, sufocated) ଆମେ ପୁଣି କି ସାହସରେ ମୁକ୍ତିମଣ୍ଡପ ଆଗରେ ମୁଣ୍ଡ ଟେକିବୁ ? ଆମେ ବି ତ 'ଅସ୍ପୃଶ୍ୟା', ଆମକୁ ବି ଛୁଇଁ ଦେଲେ ଛଅଖଣ୍ଡ ଏକାବେଳେ ଚୂନା ହବୁ – ଆମେ ଯେ ସବୁ ଲୁହଣୀ ପିତୁଳା ଟିକେ ଖରା ବାଜିଲା ମାତ୍ରେ ଏକାବେଳେ ତରଳି ଯିବୁ ସେଇ ଯୋଗୁ ଆମେସବୁ ଅନ୍ତଃପୁର କୋଣବାସିନୀ, ପରଦା କୈଦିଆଣୀ, ଓଢ଼ଣା ଘୋଡ଼ଣୀ, ଆମ ଗୋଡ଼ଥାଇ ଗୋଡ଼ ନାଇଁ, ହାତ ଥାଇ ହାତ ନାଇଁ, ଆଖି ଥାଇ ଆଖି ନାଇଁ, କାନ ଥାଇ କାନ

ନାହିଁ । ଆମେ ଅଜୀବ (ଜୀବହୀନ ବା ଆଶ୍ଚର୍ଯ୍ୟ) ଜାନୁଆର । ଅଚ୍ଛୁତ ଗୁଡ଼ା ତ ଖାଲି ସାତକୋଟି । ଆମେ ତ ଏକାବେଳେ ଷୋଳ ସତର କୋଟି । ଆମ ପାଇଁ କେହି ଗାନ୍ଧି କି ଗାନ୍ଧିଆଣୀ ଓପାସ କରୁନାହାନ୍ତି ? ଭଲା ଆମେ ଟିକେ ଚେଇଁଉଠି ଆଖି ତରାଟି ଏଇ ଦ୍ୱିଜାତି ମନୁଷ୍ୟ୍ଡ଼ି ରଚକମାନଙ୍କୁ ଚାହିଁ ଦିଅନ୍ତୁ । ଆମେ ଅନ୍ଧାର କୋଣ ମଣ୍ଡିନୀ ଚେମିଣୀ ପଂକ୍ତାକ ଯଦି ଏକାବେଳେ ଉଡ଼ି ବାହାରକୁ ଆସନ୍ତୁ, ଦୁନିଆ ଦେଖନ୍ତା ହିନ୍ଦୁଙ୍କ ରଙ୍ଗ ମଞ୍ଚରେ କେମିତି ନୂଆ ଶକୁନ୍ତଳା ନାଟଟିଏ ହୁଅନ୍ତା ।

ହାୟ ହିନ୍ଦୁ ଧର୍ମ୍ମ । ସତରେ ଆଜି ତୋର ବଡ଼ ବିପଦ, ତୋର ନିଶ୍ଚେ ଶନିଦଶା, ନହେଲେ ଏତେ ସମସ୍ୟାରେ ତୁ ଘାଣ୍ଟି ହୁଅନ୍ତୁ ! ଏଣେ ସ୍ୱରାଜ୍ୟ ସମସ୍ୟାକୁ ସେଣେ ସାମ୍ପ୍ରଦାୟିକ ନିର୍ବାଚନ ସମସ୍ୟା । ତେଣେ ଅଚ୍ଛୁତ ସମସ୍ୟାକୁ ପୁଣି ନାରୀ ସମସ୍ୟା । ଏତ ଖାଲି ସମସ୍ୟାରେ ସମସ୍ୟା, ସମାଧାନର କିଛି ଉପାୟ ଅଛି ନା ? ଆମ ଓଡ଼ିଶା ଦେଶମିଶ୍ରଣ ସମସ୍ୟା ଭଳି ଏ କି ବର୍ଷକୁ ବର୍ଷ ନବରଙ୍ଗରେ ନବଢ଼ଙ୍ଗରେ ଗଡ଼ି ଗଡ଼ି ଚାଲିଥିବ । କଥାରେ କହନ୍ତି "ନାଉ ଧୃତୁକି ଲୋ ନାଉ ଧୃତୁକି । ବୁଢ଼ୀକି ଦେଖିଚୁ କି ?" ନାଉ ଧୃତୁକି ଉତ୍ତର ଦେଉଚି – "ମୁଁ କି ଜାଣେ ବୁଢ଼ୀ ଫୁଢ଼ୀ, ମୁଁ ଯାଉଚି ଗଡ଼ି ଗଡ଼ି ।" ସେମିତି ଏକା ବୁଢ଼ୀ ଓଡ଼ିଆ ମାଆର କୋଟିକଙ୍କାଳମାଳିନୀ ରୂପଟାର ହୀନସ୍ତାକୁ କେହି ସତରେ ଦେଖିଚନ୍ତି ନା ଆମ ତୁଣ୍ଡମୁଣ୍ଡର ମାଲିକ ହରତା କରତା ଦୈବ ବିଧାତା କେହି ଆମ ଜାତିଟାର ଅଭାବ ଅସୁବିଧା, ମୁଣ୍ଡଗଣ୍ଡିକଟା ମାଦଳର ମାଦଳା ପାଞ୍ଜି ଭଳି ଦୁର୍ଦ୍ଦଶା, ଲୋକହସାର ପରାସଟା ଅନୁଭବ କରିଚନ୍ତି ? ଖାଲି କଥାରେ ବଥା ବଢ଼େଇ ଦେଖି ଶୁଖିଲା ସୁଆଗ କାଢ଼ି ଆମ ସାହୁ, ମିଶ୍ର, ମହାନ୍ତି, ମହାରାଜଙ୍କର ମନ ଭୁଲେଇ ସରଗଚାନ୍ଦ, ଦବାର ଆଶା ଆଶ୍ୱାସନା ଦଉଚନ୍ତି – ହେଲେ ଦେଶ ମିଶ୍ରଣଟା ନାଉ ଧୃତୁକି ଭଳି ଯାଉଚି ଗଡ଼ି ଗଡ଼ି । କବି ଗାଇଚନ୍ତି – "କେତେ ତୁ ଅନାଇ ବସୁ ଅକାରଣେ ଆଖି, ଏ ତିରିଶି ବର୍ଷ ତୋର ନିଆଁଶାର ସାକ୍ଷୀ ।" ଗଲା କର୍ଜନଙ୍କଠୁ ଆରମ୍ଭ କରି ଉଇଲିଙ୍ଗଡ଼ନ୍ ଆସି ପାଟଗଦି ମାଡ଼ି ବସିଲେଣି– ହେଲେ ଆମ ନିଆଶ ନିରିମାଖୀର ଭଗବାନ ହିଁ ଭରସା । ଆମ ପ୍ରାର୍ଥନାର ଫଳଟା ହଉଚି କଣ ନା ଗୋଲଟେବୁଲ୍ ଭଳି ଗୋଲ ଆଳୁ ।

ସତରେ ଏଇ ଗୋଲ ଟେବୁଲ୍ କରିବାରୁ ସବୁ ଗୋଳେଇ ହେଇ ଯାଉଚି ... ଚାରିକଣିଆ ଟେବୁଲଟା ବା କେମିତି କରନ୍ତେ ? ପୃଥିବୀଟା ଯେ ଗୋଲ, ଚାନ୍ଦଟା ଯେ ଗୋଲ, ସୂର୍ଯ୍ୟଟା ଗୋଲ, ଭଗବାନ ସବୁ ଜିନିଷକୁ ଗୋଲ ଗଢ଼ିଛନ୍ତି । ଅତଏବ ସବୁକଥା ଗୋଲ ... ବା ଭଳ ସେଇଟା ଜଗତର ସନାତନ ନିୟମ । ଧର୍ମରେ ସେଥିପାଇଁ ସିନା ଏତେ ଗୋଲ ବା ଗୋଳ । ମୁସଲମାନ କହ – ତାଙ୍କର ସିଆ ସୁନ୍ନି ପାଲା, ଇସାଇଙ୍କି ଦେଖ ତ, ତାଙ୍କର କାଥଲୀକ୍ ପ୍ରଟେଷ୍ଟାଣ୍ଟ ନାଟ ଏମିତି ଅବା ହିନ୍ଦୁଙ୍କର ବ୍ରାହ୍ମଣ, ଶୁଦ୍ର ସୁଆଙ୍ଗ । ୟା ଅନାଦି କାଳରୁ ଚାଲିଚି, ନା ଆଜି ନୂଆ ହେଇଚି ? ଏ ନୂଆ ନବିଲା ଛୁଆ ଧର୍ମବୁଢ଼ାଙ୍କର ଦୁଧଗାଲ ଭାଙ୍ଗି ନାହିଁ, ତାଙ୍କର ତ ଏତେ ଭେଶବଦଳିଲାଣି, ହିନ୍ଦୁ ଧର୍ମ ତ ବୁଢ଼ା ପୁରୁଣା । କୁଳବୃଦ୍ଧ ପିତାମହ । ତା ଚମ ଲୋଥରି ପଡ଼ିଲାଣି, ଦାନ୍ତ ପଡ଼ିଲାଣି, ଆଖି ବସି ଗଲାଣି, ଲମ୍ବ ଦାଢ଼ୀ ଧଳା ହୋଇ ଭୂଇଁରେ ଘୁଷୁରିଲାଣି, ଆଉ କିଛି ଦିନ ପରେ ନାକ ବି ଘୁଷୁରିବ, ତାର ଦୁନିଆକୁ ଦେଖେଇବାକୁ ଆଉ ନୂଆ ଛଇଟା

ଭଲା ହବ କିସ ? ତାକୁ ପୁଣି ଲୋକେ କହୁଚନ୍ତି 'ସଂସ୍କାର ହ ।' ଆରେ, ସଂସ୍କାର ହବାକୁ ତାର ବାକି ସାକି ଅଛି କଣ ? ତାର ତ ଜନ୍ମରୁ ମଲାଯାକେ ଷୋଳ ସଂସ୍କାର, ତାର ଗୁଣ ଦୁର୍ଗୁଣ ସବୁ ତ ପୂର୍ବଜନ୍ମର ସଂସ୍କାର, ତାର ଭାଷଣଟା ବି ସଂସ୍କୃତ, ସେ ତ ଏକାବେଳେ ସଂସ୍କାରିତ, ପରିଷ୍କାରିତ, ପରିମାର୍ଜିତ ପବିତ୍ର । ତାର ତ ଏମିତି ଯାଇଚି କାଳକ, ଆଉ ଅଛି ଫାଳକ । ବୁଦ୍ଧ ଶଙ୍କରଠୁ ଆରମ୍ଭ କରି କେତେ ରାମାନନ୍ଦ, ଚୈତନ୍ୟ, କବୀର, ନାନକ, ରାମମୋହନ, ଦୟାନନ୍ଦ ତା ଗଣ୍ଡିଟାର ସଂସ୍କାର କରି ଫସର ଫାଟିଗଲେ । ଏବେ ଏ ଗାନ୍ଧି, ମାଳବ୍ୟ, ମୁଞ୍ଜେ, ଶାରଦା ହେରିକା କଣ ଗୋଟାଏ ନୂଆ କରିବାର ଶରଧା କରିଛନ୍ତି କି ?

ସାତଶଅ ବରଷ ତ ପଠାଣ ପଂଝାକ ତଲୁଆର ହଲେଇ ହଲେଇ ପାରିଲେ ନାହିଁ ତାର ଟିକେ ଆଡ଼ବାଙ୍କ କରିବାକୁ, ଦେଢ଼ଶଅ ବରଷ ତ ବ୍ରିଟିଶ୍ ଶିକ୍ଷା ସଭ୍ୟତା, ନୂଆ ଆଲୁଅ ବି ତାର ଅନ୍ଧାର ଗମ୍ଭୀର ଉଆସ ଭିତରେ ପଶି ପାରିଲା ନାଇଁ, ଆଉ ଆଜି ତେମେ ସବୁ ଢଙ୍ଗ କାଢ଼ିଚ ସଂସ୍କାର କରିବ ବୋଲି ? କି ସଂସ୍କାର କରିବ ତେମେ ଗୋଟାଏ ? ଏ ଅଛୁଆଁଙ୍କୁ ଛୁଆଁ କରିଦେବ – ଆମ ନିଜାନ୍ତି କୂଅ ପୋଖରୀ, ମଠ, ଦୁଠ, ମନ୍ଦିରଗୁଡ଼ାରେ ସବୁ ତାଙ୍କ ଅପବିତ୍ର ପିଣ୍ଡମାନଙ୍କୁ ମାଡ଼ିଦବ ନେଇ ? ଏ ଓଲଟା ନିଶାପ କିଆଁ ବାବୁ ? କି ଭୂତ ତୁମ ମୁଣ୍ଡରେ ଚଢ଼ିଚି ଭଲା କହିଲ ? ଛୁଆଁ ଛୁଇଁ ଧର୍ମଟା ତ ଆମ ହିନ୍ଦୁଙ୍କର ଜନ୍ମଗତ ଅଧିକାର । ମା ପେଟରୁ ଭୂ ଭୁବ ସ୍ୱର୍ଗଲୋକ ପର୍ଯ୍ୟନ୍ତ ସେ ଛୁଆଁ ଛୁଇଁର ସଂସ୍କାର ଘେନି ବୁଲୁଚି । ତା କାଳୀ ଗାଈର ଭିନେ ଗୋଠ । ଦୁନିଆ ଲୋକେ ତାକୁ ଭାବୁଥାନ୍ତୁ ନା ସେ ଦୁନିଆ ଦାଣ୍ଡରେ ଅସ୍ପୃଶ୍ୟଇତର ମୂର୍ଖ ଅନ୍ଧ ଗୋଲାମ, ବାର ଜାତି ତେର ଗୋଳା ତାର ସେଥିରେ ଭ୍ରୂକ୍ଷେପ ଭଲା କାହିଁକି ହବ ? ତାର ହଉଚି ହାଣ୍ଡି ଧର୍ମ । ଚୁଲ୍ଲୀ ଚଉକା ସଭ୍ୟତା, ବେଦ, ବେଦାନ୍ତ, ଉପନିଷଦ୍, ରାମାୟଣ, ମହାଭାରତ ସବୁ ତାର ସେଇ ଛୁଆଁଛୁଇଁ ପାଠ ଭିତରେ । ସେହି ତାର ଜୀବନ ମରଣର ଗଣ୍ଠି । ସ୍ୱରାଜ୍ୟ ସମସ୍ୟା, ସାମ୍ପ୍ରଦାୟିକ ନିର୍ବାଚନ, ଏ ଗୁଡ଼ାର ଭଲା ତା କତିରେ କି ମହତ୍ତ୍ୱ ? ସେ ତାର ସେଇ ଛୁଆଁଛୁଇଁ ଧର୍ମ ନେଇ ମରିବ ଅବା ବଞ୍ଚିବ । ସାବଧାନ । ତା ଧର୍ମ ଉପରେ ହାତ ଦିଅ ନାହିଁ । ଅତଏବ ଗାନ୍ଧି ମହାରାଜ ଆଗରୁ ତେତି ଯାଆନ୍ତୁ –ନଇଲେ ପଛକୁ ଭାରି ପସ୍ତାଇବେ । ସେତେବେଳେ ବିରାଟ ହିନ୍ଦୁଧର୍ମ ନିଜର ଉଦାର ସଙ୍କୀର୍ଣ୍ଣତାରେ ତାଙ୍କୁ କ୍ଷମା କରି ପାରିବଟି ? ଶୀଘ୍ର ତାଙ୍କର ଏକଥା ଥଣ୍ଡା ମୁଣ୍ଡରେ ଧ୍ୟାନ କରି ଆପଣା ବରତ ଛାଡ଼ିଦେବା ଉଚିତ । ଭଲା ସେ ବା ଖାଉଥିଲେ କଅଣ ? ଚୋପିଏ ଛେଳି ଦୁଧ, ଦିଟା ଶୁଖିଲା ଖଜୁର, ଗଣ୍ଡିଏ ଅଙ୍ଗୁର, ଖାଉଥିଲ ଯେ, ତା ପୁଣି ଅଛୁଆଁଙ୍କ ଲାଗି ଛାଡ଼ିଚ କିଆଁ ବାପୁଜୀ । ଯଦି ପ୍ରକୃତରେ ତାଙ୍କ ପାଇଁ ସମାନାଧିକାର ଚାହୁଁଚ, ତା ହେଲେ ଆମ ତେତିଶକୋଟି ଦିଅଁ ଦେବତାଙ୍କ ଭିତରୁ ସାତକୋଟି ମୁଣ୍ଡ ଗଣିତ ସାତକୋଟି କାଢ଼ିକୁଢ଼ି ଘିନି ଯାଆନ୍ତୁ । ଜଣକୁ ଗୋଟାଏ ଲେଖା ବାଣ୍ଟି ଦିଅନ୍ତୁ । ଏ ବୁଢ଼ା ଦିହରେ ଭଲା ଉପାସ କରି କଣ ମୋଟାଏ ପଡ଼ିଚ ? ବାଧିକା ହେଉଯିବ । ଅଛୁତଙ୍କୁ ବାଧୁ କି ନ ବାଧୁ, ତାଙ୍କ ମୋଟ ମହିଷିଆ ଯାଦୁରା ଚମ ବଡ଼ ଟାଣ, ଆମ କଅଁଳ ଚମକୁ ତ ବଡ଼ ବାଧିଯିବ ।

ସମ୍ପାଦକ ଭାଇ । ଆଜିକାଲି ଦିଲ୍ଲୀର ଆବ୍‌ହାଉଆ ଯଦିଚ ନୁହଁ କାଲୁଆ, ନୁହଁ ତତଲା – ତଥାପି ଟାଇଫଏଡ୍ ମେଲେରିଆ ଯୋଗୁ ପ୍ରାଣରେ ଆଉ ସେ ଶରଦ୍ ନିଶାର ନିଶାଳିଆ

ଚାନ୍ଦିନୀ, କୁନ୍ଦଗନ୍ଧଗୋଳା ପବନର ଢେଉ, ସେ ଲଳିତ ରାଗିଣୀ ବଜଉ ନାହିଁ । ଗଙ୍ଗା ମୁହାଣର ବାଲି ଚଡ଼ା ପୋଚରା ଦଳମଡ଼ା ପାଟଦହଠୁ ଆରମ୍ଭ କରି ଚିତ୍ରୋତ୍ପଳାର କଣ୍ଟପଦକ କଟକ, ମହୋଦଧିର ମଥାମଣି ପୁରୀ-ଚିଲିକା-ନୀଳୋତ୍ପଳର କେଶର ଗଞ୍ଜାମ ପର୍ଯ୍ୟନ୍ତ ଗ୍ରାସ କରି ମେଲେରିଆ ପିଡାଶୁଣୀର ପେଟ ପୂରିଲା ନାହିଁ ଯେ, ସେ କଲିକତାରୁ ରାଜଛଡି ଦିଲ୍ଲୀକୁ ଉଠି ଆସିବା ସାଙ୍ଗେ ସାଙ୍ଗେ ଆପଣା ଆଡ୍‌ଡ଼ା ବି ଏଠି ଆସି ଜମେଇ ଦେଲା । ତାର ଭାରତ ବୁଲା ସ୍ୱଭାବକୁ କିସ ବାହୁନିବା ? ତା କବଳରେ କିଏ ଭଲା ଆମ ଓଡ଼ିଆ ରକ୍ତ ମାଉଁସ ଶରୀର ହେଇ ପଡ଼ିନାହିଁ - ନା କୁଇନାଇନ ଗୋଲିର ସୁଆଦ ଚାଟି ନାହିଁ ? ଓଡ଼ିଆଙ୍କର ତ ବରଷକ ବାରମାସ-

"ତାପ ସନ୍ନିପାତ ବିକାର ବିଷାଦ

ଜୀବନ ସଙ୍ଗାଳି କୁଇନାଇନ୍ ।"

ଭଲା ଦିଲ୍ଲୀରେ ଓଡ଼ିଆ ହାଡ଼ ଚମ ପାଇଁ ମେଲେରିଆ ଡାଆଣୀ ତା ରସ ଚୁଷିବା ମଜା କାହୁଁ ଛାଡ଼ନ୍ତା ? ତା 'ହାଇଟେମ୍ପେରେଚର' ଦାଉରେ ଆଉ ମଗଜରେ କିଛି ଜ୍ଞାନର କଥା ଅଛି ବା ଥାଇପାରେ । ସେଇ ଯୋଗୁ ଓଡ଼ିଆଙ୍କର ନିତି ଜ୍ଞାନଘର ହଜି ଯାଉଚି ନା । ଆପଣା ଘରର ଆପେ ଭଗାରି ହେଇ ବସୁଚନ୍ତି । ନଇଲେ ଆମାଲ୍‌ଗାମେସନ୍ ରୂପୀ ଅମୃତ ଟିକକ ଏତେ ସିନ୍ଧୁ ମନ୍ଥି ମନ୍ଥି ଶେଷକୁ ସିମଳା ଦଉଡ଼ି ଦଉଡ଼ି ତାଙ୍କୁ ମିଳୁନାହିଁ ନା ଦେଶ ମିଶ୍ରଣ ଲକ୍ଷ୍ମୀଙ୍କି ପାଉ ନାହାନ୍ତି । ତୁଚ୍ଛାକୁ ଲକ୍ଷ୍ମୀଙ୍କି କହୁଚନ୍ତି ଧର ଧର ଧର । ଜ୍ୱର ରୋଗୀର ପ୍ରଳାପ ତ । କଣ ଯେ ବକି ବକି ଲେଖି ଲେଖି ଗଲିଣି, କଥାଟା ଯେ କୁଆଡ଼େ କୋଉ ସୁଅରେ ଭାସିଗଲାଣି, ନଡ଼ିଆ ଗଛରେ ଚଢ଼କ ପଡ଼ି ଗୁଆଗଛ ଭାଙ୍ଗି ଗଲାଣି, ତା ମୁଁ କିଛି ଠିକ୍ କରିପାରୁ ନାହିଁ । ଅତଏବ ଭୁଲ ଦୋଷ କ୍ଷମା ସାଦରେ ମାଫ୍ କରିବେ । ଆଉ ଚଉଧୁରୀ ବଜାର ଆମ ଅକ୍ଷୟ ବାବୁଙ୍କ ଡାକ୍ତରଖାନାରୁ ବୋତଲେ ଭିକ୍‌ଟୋରିଆ ଟନିକ୍ ପିଲ୍ ପଠାଇ ଦେବାରେ ହେଳା କରିବେ ନାହିଁ ଟି । ନଇଲେ ଆମ କଲିକତି ଓଡ଼ିଆ ଦୋକାନର ଢାରମଲିନ ଜ୍ୱରର ଯମ ଶିଶିଏ ଅନୁଗ୍ରହ କରିବେ ।

ନମସ୍ତେ । ଇତି ।

## ଦିଲ୍ଲୀଚିଠି (୮)

ବୀରଶ୍ରୀ

(ନବୋତ୍କଳ ଗଠନ ପରେ ମତାମତ-

'ବୀରଶ୍ରୀ' 'ବୀର ଶ୍ରୀମତୀ' ଉପାଧି ଗ୍ରହଣ )

ବୀର ଶ୍ରୀଯୁକ୍ତ ସମ୍ପାଦକ ମହୋଦୟ,

ସାଦର ନମସ୍ତେ ।

ଆଜି ବାସ୍ତବରେ ଗୋଟିଏ ମହାନ ଆନନ୍ଦର ଦିନ । ୧୯୩୬ ଅପ୍ରେଲ ପହିଲା ଆସିଗଲା । ନବ ସହକାରର ରସାଳକୁଞ୍ଜରେ ପିକ ପଞ୍ଚମ ଲହରରେ ନବ ରସାଳ ମଧୁଧାରା ବର୍ଷା କରି ଦେଇଗଲା ପରା । ପକ୍ୱ ରସାଳ ଶ୍ରୀଫଳ ସହିତ ସୁମିଷ୍ଟ ଦେଶ ମିଶ୍ରଣ ମଧୁ ମିଶିଗଲା ।

ବହୁ ଦୂରରେ ଏ କଳା କାଳିନ୍ଦୀ କୂଳରେ ନବ ପ୍ରଭାତୀ ତାରାର ପ୍ରଥମ ସ୍ଫୁରଣରେ ନବୀନ ଉଷାର ଲଜ୍ଜାରୁଣ ମୃଦୁ ମଧୁର ସଞ୍ଚରଣ ସହିତ ନିର୍ମଳ ନଳିନୀ ସରୋଜିନୀର ହୃଦ୍‌କମ୍ପନ, ସୁରମା ମାଳତୀର ସୁରଭିତ ନିଃଶ୍ୱାସ, ସରଳ କୁଞ୍ଜବାଳା ଗୋଲାପ କଳିକାର ଅଧରାମୃତଶୋଭୀ ମନୋହର ହାସ୍ୟ, ଅନ୍ନପୂର୍ଣ୍ଣା ଅପର୍ଣ୍ଣା ବୀର ଶ୍ରୀ ବୀରବରାଙ୍ଗନା କଳିଙ୍ଗ ଜନନୀଙ୍କୁ ଆଜି ଉଦ୍‌ବୋଧନ କରି କି ମହାମୋହନ ଲଳିତ ଆଶାବରୀ ଶୁଣାଇଛି । ବହୁ ଦୂରରେ ଏ ନୀଳ ଯମୁନା କୂଳରେ, କୁନ୍ତଳା ଆଜି ତା ଶୁଣି ପାରିଛି । ଉତ୍କଳ ବାଳିକା ବୀରଶ୍ରୀ ବୀରବର ଗଜପତି ଗୌଡ଼େଶ୍ୱର ଦେଶର କନ୍ୟା ଆଜି ପ୍ରାଣର ଆନନ୍ଦରେ ଆଶାର ଉଲ୍ଲାସରେ ଆତ୍ମହରା – ଆକୁଳ ।

ଆଜି ସେ କେବଳ ଭାବୁଛି – ଆଶାର ତାର ସଫଳୀଭୂତ ପ୍ରଥମ ପ୍ରଭାତ । ଏହି ଆଶା ସ୍ନିଗ୍‌ଧ ପ୍ରଥମ ପ୍ରଭାତ ଦେଖିବାକୁ ଯେ ଉତ୍କଳର ପ୍ରାଣ ବର୍ଷ ବର୍ଷ ଧରି କେତେ କଠୋର ସାଧନା କରିଥିଲା, କେତେ ତପସ୍ୟା କରିଥିଲା – ସେହି ସାଧକ ତପସ୍ୱୀଙ୍କ ମଧରୁ ମଧୁସୂଦନ, ବିଶ୍ୱନାଥ, ଉତ୍କଳମଣି ଗୋପବନ୍ଧୁ, କବିକୁଳ ତିଳକ ମେହେର, କବିପ୍ରିୟା ପ୍ରସାଦବାଳା ଆଜି ଆଉ ଆମ ମଧରେ ନାହାନ୍ତି, କିନ୍ତୁ ତାଙ୍କ ଆତ୍ମା ଆମ ସଙ୍ଗରେ ଅଛି । ଆମେ ତାଙ୍କ ସାଧନାର ଫଳ ଲାଭ କରିଛୁ । ସ୍ୱର୍ଗରେ ଥାଇ ସେ ଆମକୁ ଆଶୀର୍ବାଦ କରନ୍ତୁ ।

ଆମେ ଆଜି ଆନନ୍ଦ କରୁଚୁ, କିନ୍ତୁ ପ୍ରକୃତରେ କଣ ଆମେ ପୂର୍ଣ୍ଣାନନ୍ଦର ଅଧିକାରୀ ? ଆମେ ଯେ ପାଇ ସୁଦ୍ଧା ପାଇ ନାହୁଁ । ଆଜି ମଧ ଆମ ସିଂହଭୂମି, ଆମ ଖଡ଼୍‌ଗପୁର, ମେଦିନୀପୁର, ଆମ ଜଗଜ୍ଜନମନମୋହିନୀ ମଞ୍ଜୁଷା, ନିର୍ମଳା ତରଳା, ପାରଳାର ଅର୍ଦ୍ଧଭାଗ ଆଦି ଅନେକ ଭୂଭାଗ ଆମର ରସାଳିନୀ କଳିଙ୍ଗର କଳିତକାନ୍ତ ତନୁରୁ କଟା ହୋଇରହିଚି । ବିରାଟ କଳିଙ୍ଗ, ବୃହତ୍ତର ଉତ୍କଳର ସ୍ୱପ୍ନ ଯେ ପୂର୍ଣ୍ଣଭାବରେ ସଫଳ ହେଲା ନାହିଁ । ପାର୍ବଣ ଘରେ ପରମାତ୍ମୀୟଙ୍କର ଅନୁପସ୍ଥିତିର ବିଚ୍ଛେଦବେଦନା ଆମ ପ୍ରାଣକୁ ଯେ ଘାରି ରଖିଲା । ଆମେ ପୂର୍ଣ୍ଣ ଭାବରେ କିପରି ବା ଆନନ୍ଦ କରିବୁ ।

ଆଜି ଆନନ୍ଦ ଦିନରେ ଅଶ୍ରୁସିକ୍ତ ଆଖି ଯେ ଅନେଇ ପାରୁନାହିଁ । ମା'ର ପୂଜା ପୂର୍ଣ୍ଣୋପଚାରରେ କିପରି କରିବୁ ? କିନ୍ତୁ ଭାଇ, ପାଇଚୁତ । କିଛି ତ ପାଇଚୁ । ଏତେଟା ପାଇଚୁ ଯେତେବେଳେ, ଆଉ ଯେତକ ବାକି ଅଛି, ସେ ସବୁ ଦିନେ ନିଶ୍ଚେ ମିଳିଯିବ ଆମର ହୃଦୟର ଆକର୍ଷଣରେ । ଆମେ ଯେ ପରସ୍ପରର କେତେ ନିକଟ । ଆମ ଓଡ଼ିଆ ଜାତି ଭିତରେ ଗୋଟିଏ ବିରାଟ ରାଷ୍ଟ୍ରୀୟତା, ଗୋଟିଏ ଅଖଣ୍ଡ ଏକତା ଅଛି । ଆମେ ଯେ ବୀରଶ୍ରୀବୀରବରର ବଂଶଧର । ପ୍ରତ୍ୟେକ ଓଡ଼ିଆ ଭାଇ ଭଉଣୀ ନିଜକୁ ଏହି 'ବୀରଶ୍ରୀ' ଉପାଧିରେ ଭୂଷିତ କରନ୍ତୁ । ଆଉ ଆମେ ଦୁର୍ବଳ ଭୀତ କମ୍ପିତ ଜାତି ନୋହୁ । ଆମ ଅତୀତ ଥିଲା ଭବିଷ୍ୟତ ଅଛି । ଜାତୀୟ ନବବର୍ଷର ପ୍ରଥମ ଦିନରେ, ଭାରତର, ପ୍ରଥମ ମୁହୂର୍ତ୍ତରେ ଏହି ପବିତ୍ର ନାମ ଆମର ଜାତୀୟତାର, ରାଷ୍ଟ୍ରୀୟତାର ମହାନ ଚିହ୍ନ, ପବିତ୍ର କଳିଙ୍ଗମାତା ଉତ୍କଳଜନନୀର ଚରଣ ପୂଜା କରି ମୁଁ ଗ୍ରହଣ କରିଚି ଏବଂ ପ୍ରତ୍ୟେକ ଉତ୍କଳୀୟ ଭାଇଭଉଣୀଙ୍କୁ ଏହି 'ବୀରଶ୍ରୀ' ଉପାଧି ଗ୍ରହଣ ଲାଗି ଉଦ୍‌ବୋଧିତ କରୁଚି ।

ଭାରତ ବର୍ଷୀୟ ଶିଖ ମାତ୍ରେ 'ସିଂହ' ଉପାଧି ଗ୍ରହଣ କରିଚନ୍ତି । ପ୍ରତ୍ୟେକ କ୍ଷତ୍ରିୟ ରାଜପୁତ ସିଂହ ପଦବୀରେ ଭୂଷିତ । ନାମରେ ବି ଗୋଟିଏ ନିଶା –•ଚିହ୍ନ ଧାରଣରେ ମଧ

ଗୋଟିଏ ପୌରୁଷର ମାଦକତା ଅଛି । ଆମେ ଯେତେଦିନ ନିଜକୁ ଦୁର୍ବଳ, ପତିତ ଭାବୁଥିବୁ, ତେତେ ଦିନ ଅବଜ୍ଞାତ, ହୀନ ହୋଇ ପଡ଼ିଥିବୁ । ଭାଇଭଉଣୀ । ସେ ଅତୀତକୁ ଭୁଲ । ତୁମଠି ଏବେ ମଧ ଯେଉଁ ଦୁର୍ବଳତା ଅଛି, ତା ଦୂର କର । ଏ କବିର କଳନା ନୁହେଁ । ଏ ବୀରଶ୍ରୀ ଓଡ଼ିଆର ଜନ୍ମଗତ ଉପାଧି । ପ୍ରତ୍ୟେକ ପିଲାର ଜନ୍ମପତ୍ରିକା ଏହି ଉପାଧିରେ ହିଁ ଆରମ୍ଭ ହୁଏ । ଏ ନାମର ଟେକ ସ୍ୱୟଂ ଜଗନ୍ନାଥଙ୍କ ଇଚ୍ଛାରୁ ହୋଇଚି । ନୋହିଲେ ବୀରଶ୍ରୀର ବଂଶଧର ପାରଳାଙ୍କ ଦ୍ୱାରା ନବ ପ୍ରଦେଶ ଗଠିତ ହୋଇଥାନ୍ତା ?

ଏଥର ଉତ୍କଳୀୟ, ତୁମର ଉତ୍‌ଥାନର ସମୟ ଆସିଲା । ଆଉ ଅର୍ଦ୍ଧମୃତ ପ୍ରାଣରେ ବଢ଼ି ମରୁଡ଼ି ମହାମାରୀରେ ମରିବ ନାହିଁ । ତୁମେ ବୀର ଜାତି, "ବୀର" ଆଖ୍ୟା ଘେନ । ପୁରୁଷମାନେ "ବୀରଶ୍ରୀ" ହୁଅନ୍ତୁ । ନାରୀମାନେ "ବୀର ଶ୍ରୀମତୀ" ହୁଅନ୍ତୁ । ଗୋଟିଏ ସ୍ୱସ୍ତିକ ଚିହ୍ନ ପଛରେ ଆର୍ଯ୍ୟ ଜର୍ମାନୀ ଆଜି ପାଗଳ । ତୁମର ଏଡ଼େ ବଡ଼ ମହାନ୍ ଗୌରବର ଭୂଷଣ ଥାଉ ଥାଉ ତୁମେ ତାହା ଗ୍ରହଣ କରିବାକୁ କିମ୍ପା କୁଣ୍ଠିତ ?

ନାମରେ ଶକ୍ତି ଅଛି । "ବୀର" ନାମରେ କେଡ଼େ ମହାନ ଶକ୍ତି, କି ସୁମହାନ ପ୍ରେରଣା । ନିଖିଳ କଳିଙ୍ଗର ଭାଇ ଭଉଣି । ଯା କଣ ତୁମକୁ କହିଦେବାକୁ ହେବ ? ଏହି ନାମବଳରେ ତ ମନୁଷ୍ୟ ଅସାଧ ସାଧନ କରିପାରେ । ଏହି ବୀର ନାମ ଘେନି ବୀରବ୍ରତରେ ବ୍ରତୀ ହୋଇ ବୀରଶ୍ରୀ ଦେଶର ବୀର ସନ୍ତାନ ରୂପେ ଯୁଗେ ଯୁଗେ ଜଗତରେ ନିଜ ଜାତୀୟତା ଓ ରାଷ୍ଟ୍ରୀୟତାର ବିଜୟବାନା ଟେକି ଧର, ଦେଶର ମହାମଙ୍ଗଳ ମିଳନର ପରମ ମୁହୂର୍ତ୍ତରେ ମୋର ଏହି ଶୁଭ କାମନା ।

ମୁଁ ତୁମରି ଉତ୍କଳୀ ଭଉଣୀ
ବୀର ଶ୍ରୀ କୁନ୍ତଳା କୁମାରୀ ଦେବୀ

### ଜୟ ମା

ବୀର ଶ୍ରୀ ବୀରବର ବୀରାଗ୍ରଗଣ୍ୟେ ।
ବୀର ଶ୍ରୀ ଉତ୍କଳ କଳିଙ୍ଗ ଧନ୍ୟେ !
ବୀର ଶ୍ରୀ ବୀରବର କୀର୍ତ୍ତି ବିଚିତ୍ରେ ।
ବୀର ଶ୍ରୀ ବୀରବର ଧାତ୍ରୀ ପବିତ୍ରେ ।
ଜୟ ମା ବୀର ଶ୍ରୀ ବୀରବର ଜନନୀ,
ଜୟ ମା ବୀର ଶ୍ରୀ ବୀରବର ପାଳିନୀ,
ଜୟ ମା ବୀର ଶ୍ରୀ ବୀରବର ମୋହିନୀ,
ଜୟ ମା ବୀର ଶ୍ରୀ ଶାଳିନୀ ।
ବୀର ଶ୍ରୀ ଉତ୍କଳ ଅତୁଳ ଗୌରବ
କୋଣାର୍କ ଭୁବନ ଭାସ୍କର ଗାରିମା

ତବ ପୁଣ୍ୟ କରେ କଳିଙ୍ଗ ଅଙ୍ଗରେ
ଲେଖ ଜଗନ୍ନାଥ ଏ ବୀର ଜାତିରେ
ବୀର ଶ୍ରୀ ମହିମା ।
ହେଉ ଆମେ ନିତ୍ୟ ବୀର ଶ୍ରୀମଣ୍ଡିତ
ବୀର ଶ୍ରୀ ସ୍ୱଦେଶ ନ ରହୁ ଖଣ୍ଡିତ
କଳିଙ୍ଗ କୂଳରେ ସରବେ ଗରବେ
ହୁଅନ୍ତୁ ବୀରଶ୍ରୀ
ହେଉ ପଛେ ମୂର୍ଖ ଭିକାରୀ ପଣ୍ଡିତ ।
ହେଉ ସେ ମଳିନ ମ୍ରିୟମାଣ କ୍ଷୀଣ
ବୀର ଶ୍ରୀ ହେଉ ତା' ଜୀବନର ଚିହ୍ନ,
ବୀର ଶ୍ରୀ ଜାତିରୁ ବୀର ଶ୍ରୀ ଉଚ୍ଛିନ୍ନ
ନ ହେଉ କଦାପି ନ ହେଉ ବିଚ୍ଛିନ୍ନ
ଆମେ କଳିଙ୍ଗର ବୀର ଶ୍ରୀ ସନ୍ତାନ,
ବୀର ଶ୍ରୀ ଆମର ଜାତୀୟ ସମ୍ମାନ ।
ବୀର ଶ୍ରୀ ଜଗତେ ଆମ ଜୟ ଧ୍ୱଜା,
ଭାରତର ପ୍ରତି ପ୍ରାନ୍ତେ ପାଉ ପୂଜା ।
ଐର ଖାରବେଳ ଗଙ୍ଗା ଗଜପତି ।
ବୀର ଶ୍ରୀ ବୀରର ଜାତି ମହାମତୀ ।
ମହାଭାରତର ମହା ଉଦ୍‌ବୋଧନେ,
ଗାନ୍ଧି, ଜବାହାର, ସୁଭାଷ, ମଦନେ ।
ବୀର ଶ୍ରୀ ଭୂଷିତ କର ଆଜି ଭାଇ,
ସର ଦିବଙ୍ଗତେ ଅଶ୍ରୁ ବରଷାଇ ।
ମଧୁ ଗୋପବନ୍ଧୁ ଚିତ୍ତ ଲାଜପତ,
ମୋତି ଜ୍ୟୋତି ଯତି ବୀରେନ୍ଦ୍ର ଜଗତ ।
ସ୍ୱର୍ଗୀୟା କମଳା ବୀର ଶ୍ରୀ ଶାଳିନୀ,
ଭାରତ ଦୁହିତା ବୀର ବିଳାସିନୀ ।
ବୀର ଶ୍ରୀ ଭାରତ ବୀର ଶ୍ରୀ ଉତ୍କଳ,
ଯଶୋଗାନେ ପୂରୁ ପୃଥିବୀ ମଣ୍ଡଳ ।

ବୀରଶ୍ରୀ କୁନ୍ତଳା କୁମାରୀ
ଦିଲ୍ଲୀ
ବୀରଶ୍ରୀ ସମ୍ବତ୍ ୧/୪/୧୯୩୬

# ନିଜକଥା

ଦୁଇବର୍ଷ ପୂର୍ବେ ମୋର ପ୍ରିୟଭୂମି କଟକ ନଗରରେ ଥିଲାବେଳେ କେତେଗୁଡ଼ିଏ ସ୍ୱର ବିଶିଷ୍ଟ ଖଣ୍ଡ କବିତା ଲେଖିଥିଲି । ସେଗୁଡ଼ିକ ପ୍ରତି ଶ୍ରୀମାନ୍ ଚକ୍ରଧରଙ୍କର ଏତେ ଶ୍ରଦ୍ଧା ଆସିଥିଲା ଯେ ସେ ସେଗୁଡ଼ିକୁ ସଜାଇ ଗୋଟିଏ ବହିର ସୂତ୍ରପାତ କରିଥିଲେ । ଏବଂ ମୋତେ ବହିଟି ଶେଷ କରିବାକୁ ଅଢି କରିଥିଲେ ।

ବହିର ନାୟକ ନାୟିକାଙ୍କୁ ରାଧାକୃଷ୍ଣ ଭାବରେ ଗ୍ରହଣ କରିବା ପାଇଁ ମୋର ଆଦୌ ଇଚ୍ଛା ନ ଥିଲେ ହେଁ, ପୁଣି ମହାଭାବ ପୂର୍ଣ୍ଣ ରାଧାକୃଷ୍ଣ ଲୀଳା ଓ ତତ୍ ସମ୍ବନ୍ଧୀ ପୁସ୍ତକମାନଙ୍କ ବର୍ଣ୍ଣିତ ବିଷୟରେ ମୁଁ ଅନଭିଜ୍ଞ ଥିଲେ ହେଁ- ଚକ୍ରଧରଙ୍କ ସନିର୍ବନ୍ଧ ଅନୁରୋଧ ଉପେକ୍ଷା କରି ନ ପାରି ବହିର ନାମ ପ୍ରେମଚିନ୍ତାମଣି ଓ ନାଟକର ନାୟକ ନାୟିକାଙ୍କୁ ଜଗଦ୍‌ବରେଣ୍ୟ ଶ୍ରୀମତୀ-ଶ୍ରୀକୃଷ୍ଣ ନାମରେ ରଖିଅଛି ।

ବହିଟିର ଆମୂଳଚୂଳ ରଚନା ମୋର ହେଲେ ହେଁ ନାଟକୀୟ ଭାବରେ ସାଜସଜ୍ଜା ମୂଳରୁ ଶେଷ ପର୍ଯ୍ୟନ୍ତ ଚକ୍ରଧର କରିଅଛନ୍ତି । ତାଙ୍କ ଚେଷ୍ଟା ନ ଥିଲେ କିମ୍ବା ମୋ ଲେଖା ପ୍ରତି ସ୍ନେହ ନ ଥିଲେ ଖଣ୍ଡ କବିତାଗୁଡ଼ିକ ଏପରି ସଂଗୀତ ସମନ୍ୱୟରେ ପ୍ରେମଚିନ୍ତାମଣି ନ ହୋଇ ଆଉ ଅନ୍ୟ ପ୍ରକାର କିଛି ହୋଇଥାନ୍ତା । ପ୍ରେମଚିନ୍ତାମଣିକୁ ସଜାଇବା, ଉଦ୍ଧରାଇବା, ଭୂମିକା ଲେଖାଇବା ଓ ଛପାଇବା ଇତ୍ୟାଦି କାମରେ ମୁଁ ବିଶେଷ ସାହାଯ୍ୟ ପାଇଥିବାରୁ ଓ ମୋ ଲେଖା ପ୍ରତି ଶ୍ରଦ୍ଧା, ଆଦର, ଯତ୍ନ ଥିବାରୁ ମୁଁ ଶ୍ରୀମାନ୍ ଚକ୍ରଧର ମହାପାତ୍ରଙ୍କୁ ଏଥିପାଇଁ ଆନ୍ତରିକ ଧନ୍ୟବାଦ ଓ ଆଶୀର୍ବାଦ ଦେଉଅଛି ।

ଅଧ୍ୟାପକ, ସାହିତ୍ୟ ରଥୀ ଶ୍ରୀଯୁକ୍ତ ମହାନ୍ତି ଏମ୍.ଏ. ମହୋଦୟ କଠୋରଶ୍ରମ ସ୍ୱୀକାର କରି ଭୂମିକାଟି ଲେଖିଦେଇ ଥିବାରୁ ତାଙ୍କୁ କୃତଜ୍ଞତା ଜ୍ଞାପନ କରୁଅଛି ।

ଦିଲ୍ଲୀ
ତା ୨/୧୨/୩୦

ଶ୍ରୀମତୀ କୁନ୍ତଳା କୁମାରୀ ଦେବୀ

# ଶ୍ରୀକୃଷ୍ଣାର୍ପଣମସ୍ତୁ

ପଥ ମଝିରେ କୃଷ୍ଣ ଦେଖା
ଆଉ ନ ଯିବି ବୃନ୍ଦାବନେ
ଏବେ ମନମୋହନ ଶ୍ୟାମଘନ
ରାଜେ ହୃଦ ପଦ୍ମାସନେ ।
ପଥଧୂଳି ହେବି ବୋଳି
ମଥାରେ ମୁଁ ନେବି ଟୋକି
ଲୋଟିବି ଶ୍ରୀହରି ବୋଲି
ଧୂଳି ଶେଯେ ଅଯତନେ ।
କାନ୍ଧେ ବହି ନାମ ଝୁଲି
ପଥେ ପନ୍ଥେ ବୁଲି ବୁଲି
ହରିନାମ ସୁଧାପାନେ
ମତାଇବି ସର୍ବଜନେ ।

## ଚାତକିନୀ

ଅକ୍ଷିତ ନିର୍ମାଖୀ ବୁଲିବି ସଂସାରେ,

ଭିକାରୁଣୀବେଶେ ଦୁଆରେ ଦୁଆରେ,

ଭଙ୍ଗା କେନ୍ଦରାରେ ଗାଇବି ତା' ନାମ

ପ୍ରାଣାରାମ ପ୍ରିୟ ଚିର ପ୍ରାଣାରାମ

ସେତିକି ମୋ ଧର୍ମ୍ମ ଧାରଣା,

ଯୋଗ ଯାଗ ଜପ-ତପ, କାଷ୍ଠା-ନିଷ୍ଠା,

ପୂଜା ପାଠ ମୋତେ ଅଜଣା ।

## ପରିଶିଷ୍ଟ–୧

# ପ୍ରେମଚିନ୍ତାମଣି

(୧୯୩୦ରେ ପ୍ରକାଶିତ ପ୍ରଥମ ସଂସ୍କରଣ ଅନୁସରଣରେ)

(ଶ୍ରୀକୃଷ୍ଣ ମୂର୍ତ୍ତିକୁ ପ୍ରଣାମ କରୁ କରୁ)

**କୁମାରୀଗଣ**

ହୃଦୟ ମନ୍ଦିରେ, ଚିର ସୁନ୍ଦର, ରାଜେ ଚିର ରାଜେ ରେ ।
ପରାଣ ଛନ୍ଦେ ଗାଅ ଆନନ୍ଦେ,
ମାନସ ମୁରଜେ ବାଜେ ରେ ।
ନୀଳ–ପୟୋଧି–ଲୋଳ–କଲ୍ଲୋଳେ
ମନ୍ଦ–ମାରୁତ–ଗନ୍ଧ–ହିଲ୍ଲୋଳେ
ପିକ ପଞ୍ଚମେ ଅଳି ଗୁଞ୍ଜନେ
ବୀଣା ବଂଶୀରେ ବାଜେରେ ।
ନୈଶ ଅମ୍ବର ତାରକା ଶଶୀ
ପ୍ରଫୁଲ୍ଲ ପୁଷ୍ପ ସୁଷମା ରାଶି ।
ଶତ ନିର୍ଝର ଗିରି ପ୍ରାନ୍ତର-
ଶୋଭା ବିଭାରେ ରାଜେ ରେ ।
ଖିଳ–ରଞ୍ଜନ ଦୁଃଖ–ଭଞ୍ଜନ
ସନ୍ତାପହର କୃପା–ନିଧାନ
ଚିରସୁନ୍ଦର ସତ୍ୟ ମଧୁର
ବିଶ୍ୱ ଅନ୍ତରେ ରାଜେ ରେ ।

**ଚାତକିନୀ**

ଦୃଶ୍ୟ : (ନୀଳନୀରା ତରଙ୍ଗ–ରଙ୍ଗିନୀ ଯମୁନାର ତୀର–କୁଞ୍ଜମାଳାରେ ସପତ ସଖୀ ଏବଂ ଶ୍ରୀମତୀ । ସଖୀମାନେ ଭିନ୍ନ ଭିନ୍ନ ଲତା ବୃକ୍ଷ ଗୁଳ୍ମ ଅନ୍ତରାଳରେ ଫୁଲ ତୋଳୁଅଛନ୍ତି । ଶ୍ରୀମତୀଙ୍କର ପ୍ରିୟ ସଖୀ ଲଳିତା ଦୂର ଅନ୍ତରାଳରେ ରହି ତାଙ୍କୁ ନିର୍ନିମେଷ ଦୃଷ୍ଟିରେ ଚାହିଁ ରହିଅଛି । ଶ୍ରୀମତୀ ଗୋଟିଏ ଫୁଲଭରା କ୍ଷୁଦ୍ର ବୃକ୍ଷର ନିକଟରେ ବସି, ପ୍ରତ୍ୟେକ ଶାଖା, ପ୍ରତ୍ୟେକ ଫୁଲକୁ କୋମଳ ହସ୍ତରେ ସ୍ପର୍ଶ କରୁଅଛନ୍ତି– ଯେପରି କୌଣସି ଚିନ୍ତାରେ ବିଷଣ୍ଣ,ୀ୦–ଚିତ୍ତା । ଦୂରରୁ ସଖୀମାନଙ୍କର ଗୀତ–ଲହରୀ ଭାସି ଆସୁଅଛି ।)

କମଳା :

ଅତି ସୁଖ ପାଏ ତୋତେ ସୁମନରେ ମୋହନରେ
ହୃଦୟର ପ୍ରତିରୂପ ମୋହର କି ଜଗତରେ ।
ପର୍ଣ୍ଣେ ପର୍ଣ୍ଣେ, ବର୍ଣ୍ଣେ ବର୍ଣ୍ଣେ,
ଦଳେ ଦଳେ, ଝଳେ ଝଳେ,
ମାନବ ମାନସ ଗାଥା କି କରୁଣ ରସାଳରେ,
କାନ୍ଦେ ହସେ ହେରି ତେଣୁ ତନୁ ତୋର ନିରୋଳରେ ।

ବିଶାଖା :

କଳିତ ଲଳିତ ଦଳେ ଲେଖା ସଙ୍ଗୀତରେ
ଚିରନ୍ତନ ସୁଧାଧାରା ଶୋଣିତେ କି ମଥିତରେ
ବ୍ୟଥିତ ବିଧୁର ଆଖି
କି ଆଲେଖ୍ୟେ ରହେ ଲାଖି
ଅଲକ୍ଷେ ନିଷ୍ପନ୍ଦ ହୃଦ କି ଆନନ୍ଦେ ନନ୍ଦିତରେ
କି ସେ ଅକଥନୀୟ ସେ ସ୍ନେହ, ବିଶ୍ୱ ବନ୍ଦିତରେ ।

ଲବଙ୍ଗଲତା :

ଜଗତ-ଜଞ୍ଜାଳ ବଣେ ଫୁଟେ କି ସେ କୁସୁମରେ
ସୁଷମାରେ ଜିଣି ସ୍ୱର୍ଗ ସାର ଶିରୀ ସମୂହରେ
ଜଣାଏ ଅଜଣା ଜନେ
ପରକୁ ଆପଣା ମଣେ
ଦୂରକୁ ନିକଟ ବନ୍ଧୁ କରେ କ୍ଷଣକରେ
ବାନ୍ଧଇ ହୃଦୟେ ବିଶ୍ୱ ଘେନି ଅବା ଘଡ଼ିକରେ ।

ମଞ୍ଜୁଳା :

ନଭୋ-ନୀଳିମାରେ ଶୋଭେ କିବା ସେ ଉଦାର ପ୍ରେମ
ତା'ଝଟକେ ଝଳେ, ତାରା ରଙ୍ଗେ କି ରଞ୍ଜିତ ହେମ,
ସରିତେ ଅମୃତ ଧାରା
କୁସୁମେ ନୟନ କାରା,
ଚିରଚୋର ସେ ମାଧୁରୀ ମମ ଆତ୍ମବିସ୍ମୃତିରେ
ଅନନ୍ତ ବନ୍ଧନ ମଧ୍ୟେ ସେହି କି ମୋ ମୁକତିରେ ।।

ଜାତିମାଳା :

ହୃଦେ ହୃଦେ ଖେଳେ ସେହି ଜଳଦେ ବି ବିଜୁଳିରେ
ଅସୀମ ମହିମା ଜ୍ୟୋତି ତ୍ରିଜଗତ ଉଜଳିରେ,
ନିଜକୁ ହରାଏ ନିଜେ
ଭୁଲେ ମୁହିଁ କରେ କି ଯେ,
ମନକୁଳା ପ୍ରେମ ସେହି ସାରା ସୃଷ୍ଟି ବଣରେ
ଶବ୍ଦ, ସ୍ପର୍ଶ, ଗନ୍ଧ, ରୂପ ମଧ୍ୟେ ଦିବ୍ୟ ରସରେ ।।

(ଅଶ୍ରୁପୂର୍ଣ୍ଣ ନୟନା ଶ୍ରୀମତୀ ଗୋଟିଏ ଫୁଲକୁ ଆଉଁଷିଦେଇ ଏବଂ ତାକୁ ଗୋଟିଏ ଚୁମ୍ବନ ଦେଇ ନିର୍ନିମେଷ ଆଖିରେ ବାରମ୍ବାର ତାକୁ ଚାହିଁବା ଓ ବ୍ୟାକୁଳିତ ହେବା ।)

ଶ୍ରୀମତୀ :

ଆହା ଏଇ ଫୁଲଟି ପରି ।
ଚିର ଅନ୍ଧାର ନୀରବ-ନିଶିରେ ଛିଣ୍ଣିରେ ଯିବି ମୁଁ ମରି ।
ପ୍ରାଣେ ମୋହର କଳ୍ପ କଳ୍ପାନ୍ତ,
ବାସନା କେତେ ଥିଲା ଏକାନ୍ତ,
କନକର ରବି ରୁଚିର ସ୍ପର୍ଶ ଲଭିବି ଅନ୍ତର ଭରି ।
ହୃଦୟେ ଫୁଟିଛି ଏ ପ୍ରେମ କଢ଼ି
ଅନ୍ଧାରେ ଆଗେ, ଶୁଖିବ ଝଡ଼ି,
ସରମ ବେଦନା କେ ବୁଝିବ ଆଉ ଯୌବନ ତା'ର ଯିବଟି ସରି ।

(ଧୀରେ ଧୀରେ ଶ୍ରୀମତୀଙ୍କର ନିକଟକୁ ଆସି)

ଲଳିତା :

ନବ ନୀରଦ ଉଦୟେ, କେକୀ କି ନ ରସିବ
ନବ ମରୀଚି-ମାଳିକୁ ଫୁଲ କି ନ ଚାହିଁବ ?
ଆକାଶେ ଶୋଭିଲେ ଧନୁ ମେଘରେ
ନ ଚାହିଁବ କହ କେ ଅନୁରାଗରେ ?
ତେସନ ସୁନ୍ଦର ମନମୋହନକର
ଶ୍ରୀପାଦ-ସରୋଜେ ମନଅଳି ନ ଚୁମ୍ବିବ ?
କାହିଁ ଆଉ ତା'ର ପ୍ରାଣର ପୂର୍ଣ୍ଣତା
କାହିଁ ଉପଶମ ମନ ବ୍ୟାକୁଳତା
ଲତା ଯଦି ତେବେ ଚାରୁତରୁ ଅଙ୍ଗ
ଶତ ଚରଣର ଦଳା ସେ କି ନ ସହିବ ?
(ଆତୁର ନୟନରେ ରହି ଶୁଣିବା ପରେ ବିଷାଦିତ ସ୍ୱରରେ)

ଶ୍ରୀମତୀ :

ସଖି ! ମୁଁ କି ତାରେ ଛାଡ଼ିପାରେ
ଜୀବ ନାଡ଼ି ପଛେ ହଜିବ ହୃଦରୁ
ଜ୍ୟୋତି ଲିଭିଯିବ ବେନି ନୟନରୁ
ବୁଡ଼ିଯିବେ ଚାରୁ ଚନ୍ଦ୍ରମା ତପନ-
ତାରା ଚିର ଅନ୍ଧକାରେ ।
ଫୁଲ କୁଳୁ ତାର ସୁବାସ ଚହଟ
ସୁନାରୁ ସବୁ ତା କାନ୍ତି ଝଟ ଝଟ
ଆକାଶ ଅଙ୍ଗରୁ ଖସୁ ଲୋ ନୀଳିମା
ରକ୍ତ ତେଜୁ ରଙ୍ଗ ତାର
ଯା ପାଦେ ମୋ ଜୀବ ସେ ପଦ ରାଜୀବ
ହେଉ, ଜନ୍ମେ ଜନ୍ମେ ଗଳାହାର ।
କହନ୍ତୁ ଲୋ ଲୋକେ ଶ୍ୟାମ କପଟିଆ
କହନ୍ତୁ କାଳିଆ କୁଳ-କଳଙ୍କିଆ,

ଗଳାରେ ମୋହର ଛୁରୀ ଦେଇ ଭଲେ
ରହୁ ଆନ ଆନନ୍ଦରେ
ମଥାମଣି ସମ, ମଣିଛି ମିତଣୀ !
କିସ ପର ବାଛନ୍ଦରେ ।
କଳା କେବେ କି ଲୋ ସ୍ୱର୍ଗୁ ଡେଇଁବ
କଳାକୁ ଜୀବନ ବିକି,
କଳା ଦେହେ ତିଳେ ନ ଲାଗିବ ବୋଲି
ସାହସ ବାନ୍ଧିବି ନିକି ।
କଳା ନିତି ନବ ନବ
କଳାରୂପେ ମୋର ନୟନର ପ୍ରୀତି
ଅନୁରାଗ ଅଭିନବ ।
ସରବ ସୁନ୍ଦର ସାର,
ସୁନ୍ଦର ଦଳର ରାଜାକୁ ଅବା ମୁଁ
କରିଛି ମୋ ଗଳାହାର ।
କେ କହୁ କୁରୂପ ସହି,
ତା' ବିନା ସୁରୂପ କହୁ ଯାହାକୁ ଲୋ !
(ସେତ) ଆଖି ମୋର ଦିଏ ଦହି ।

(ଅନ୍ୟାନ୍ୟ ସଖୀମାନେ ପୂର୍ବରୁ ଫୁଲତୋଳା ଶେଷକରି ଫୁଲ ଗୁନ୍ଥାରେ ବ୍ୟସ୍ତ ଅଛନ୍ତି, ମାତ୍ର ବୃନ୍ଦାବତୀ ଦୂରରୁ ଶ୍ରୀମତୀଙ୍କର ବିଷାଦବାଣୀ ଶୁଣିପାରି ନିକଟରେ ପହଞ୍ଚି ଗାଇଲା)

**ବୃନ୍ଦାବତୀ :**

କାହିଁକିରେ ଝୁରୁ ସହି ! ସେହି ସୁନ୍ଦର ଲାଗି,
କୋଟି କନକ ତାରା ରୂପେ ଆଖି ରହିଛି ଜାଗି ।
ପଥେ ବସାଇ ଯେ ଯାଇଛି
ଗୋପନେ ପ୍ରେମେ ସେ ଚାହିଁଛି
ଦିବସେ ନିଶି ତୋ ଅଶ୍ରୁ ଝରୁଛି
ସେହି ସୁନ୍ଦର ଲାଗି,
କାନ୍ତି କମଳ ସୌରଭ ରୂପେ ପ୍ରେମ ରହୁଛି ଜାଗି
ଧୂଳି ଧୂସର ତନୁଗୋଟି,
ପାଦତଳେ ଯିବୁଟି ଲୋଟି,
ଚରଣ' ସ୍ପର୍ଶେ ନିବିଡ଼ ହର୍ଷେ ହେତୁ ସରବତ୍ୟାଗୀ ।

(ଅନ୍ୟମନା ଭାବେ)

**ଶ୍ରୀମତୀ :**

ଆହା ! ଏଇ ପଥେ ଯିବ ବୋଲି
ନିଶି ନିଶି ମୁହିଁ ଥିଲି ଉଜାଗର
ରଖିଲି କବାଟ ଖୋଲି ।

ଅତର ଚନ୍ଦନେ ହୋଇଲି ବେଶ
ସଜ ସୁମନରେ ସାଜିଲି କେଶ
ଘନ ଅନ୍ଧକାରେ କାହିଁ ସେ ମିଶିଲା
ଠୁଳେ ନ ପାରିଲି ଦେଖି
ସବୁ ଦୋଷ ଯାକ ମନ ଆକୁଳରେ
କପାଳକୁ ଦେଲି ଲେଖି ।
କାଳା, ସେ କି ଏକା ମୋର
ଜଗତ ଯାକର
ସେ ତ ମନଚୋର
ମିଛେ ମିଛେ କହେ ମୋର
ଆହା ଏଇବାଟେ ଯିବବୋଲି
ଯମୁନା କୂଳରେ
କଦମ୍ବ ମୂଳରେ
ବୁଲୁଥିଲି ଫୁଲ ତୋଳି ।
ଚକିତେ ଚମକେ ଚଞ୍ଚଳ ନୟନ
ଦିଶିଯିବ ପରା ରୂପ ବିମୋହନ
ବହିଯିବ ପରା
ରୂପ-ସୁଧା-ଧାରା
ଅଧୀର ହୃଦୟେ ଆକୁଳ କମ୍ପନ ।
ଖସି ପଡ଼େ ବାସ,
ଖସି ପଡ଼େ କେଶ,
କ୍ଷଣେ ଫୁଟେ ହାସ,
କ୍ଷଣେ ପ୍ରାଣେ କ୍ଳେଶ ।

ଆହା ! ଏଇ ପଥେ ଯିବ କାହ୍ନୁ
ଉଇଁ ଯିବ ପରା ହୃଦ-ଅମାକାଶେ
ଚିର ବିନୋଦିଆ ଭାନୁ ।
ଥର ଥର ଥର ଆଖି ଝର ଝର
ଆଗୁଳି ଧରେ କି ଲାଜ
ପଥେ ଛିଡ଼ା ହୋଇ ଚରଣ ଛିଞ୍ଚାଡ଼େ
କଣ୍ଟକ କାଢ଼ିବା ବ୍ୟାଜ ।

ଦୂରୁଁ ଯେବେ ଦେଖେ ଛାଇ
ଲାଜ ଆନନ୍ଦରେ ମଉଳି ପଡ଼େ ମୁଁ
ଚାହିଁତ ନ ପାରେ ଚାହିଁ ।
ଜଡ଼ ରସନାରେ ନ ଫୁଟେ ବଚନ
ବହିପଡ଼େ ଦେହେ ସ୍ୱେଦ ଘନ ଘନ

ରୁନ୍ଧି ଯାଏ ଅବା ନିଃଶ୍ୱାସ ପବନ
(କହ) କି କରିବି ଏହାପାଇଁ ।। (ନୀରବ)

(ଗୋଟିଏ ଫୁଲ ହାର ଧରି କମଳାର ପ୍ରବେଶ :
ତାକୁ ଦେଖିଲାମାତ୍ରେ)-

ଶ୍ରୀମତୀ :

କେତେ ଗୁଚ୍ଛେ ଫୁଲ ମାଳୀ
ଆକୁଳେ ଛିଣ୍ଡାଇ ଦଳେ କର ତଳେ
ଉଷ୍ଣ ଅଶ୍ରୁ-ରାଶି ଢାଳି ।

ଫୁଲରୁ ସୁନ୍ଦର ବଳି
କି ରଙ୍ଗେ ରଙ୍ଗିଲେ କହ ଲୋ କମଳା
ସୁନାରେ ଫୁଟିବ ଝଳି ।

(ପାଗଳିନୀ ଭାବରେ ଲଳିତା କୋଳରେ ଉପବେଶନ
ଏବଂ ଅନ୍ୟାନ୍ୟା ସଖୀମାନଙ୍କ ଶୁଶ୍ରୁଷା ।)

କମଳା :

କହ ସହି ! କାହା କଥା ଭାବୁ ବିରୋଳେ ।
କିଏ ସେ ତୋ ପ୍ରାଣ ସଖା
କା ପାଦେ ତୋ ଚିତ୍ତ ଯୋଖା ।
ଚମକେ ପୁଲକେ ଚିତ୍ତେ ପ୍ରେମ ଉଚ୍ଛଳେ ।
କାହାର ସେ ରୂପ ତୋରା,
କୋଟି ଭୁବନ ପାସୋରା
ରବି ଶଶୀ ତାରକାରେ ଛବି ଉଜଳେ ।
ନୀରବେ ନୟନାସାରେ
ଗୁନ୍ଥି କି ମୁକୁତା ହାରେ
ଅରପି ଗଳାରେ, ବାରେ ଚାହିଁବୁ ଭୋଳେ ।
ନୁହେଁ ଦିନକର ପ୍ରୀତି
ଜନ୍ମ ଜନ୍ମ ଗଲା ବିତି
ତୁ ତାହାର ସେ ତୋହର ଯୁଗ ଯୁଗଳେ ।

(ଫୁଲହାରଟି ଶ୍ରୀମତୀଙ୍କୁ ଦେବାରୁ ସେ ତାହା ଗ୍ରହଣ କଲେ ନାହିଁ, ବରଂ ଆଖି ବୁଜିଲେ ଏବଂ କିଛି
ସମୟ ପରେ ଉକ୍ତ ସଖୀକୁ ପାଖରେ ବସାଇ କହିବାକୁ ଲାଗିଲେ ।)

ଶ୍ରୀମତୀ :

ପ୍ରେମ କହ ମୁକ୍ତି ଜାଣେ
ଖାଲି କି ବେଦନା ଗୋପନେ ଉଠୁଛି
ମରୁଛି ମୁଁ ପ୍ରାଣେ ପ୍ରାଣେ ।

କାହିଁରେ ମୋହର ନ ମିଶଇ ମନ
ଥାଏ ଥାଏ ହୁଏ ଆକୁଳ ଉନ୍ମନ
ପାଗଳ ପରାଏ ଲୋଟେ ଧରାତଳେ
କେବେ ବସେ ତା'ର ଧ୍ୟାନେ
ଝିଙ୍କାସି କେତେ ହିଆ କରତତି
କେ ମାରନ୍ତି ବାକ୍ୟ ବାଣେ ।

କି ଭଳି ପଥର ପାଲଟି ଗଲି
ଜାଣୁ ଜାଣୁ ଏତେ ଅକର୍ମ କଲି
ଆତ୍ମଗ୍ଲାନି ବେଳେ ତା' ରୂପ ସୁମରି
ଆଖିରୁ ଆବେଗେ ପାଣିପଡ଼େ ଝରି
କହ ମୁଁ ବଞ୍ଚିବି ସତେ
ସବୁ ବାଟେ ମୋର କଣ୍ଟା ପଡ଼ିଛି ଲୋ
ଯିବି ଆଉ କେଉଁ ପଥେ ?
ଯେତେ କରେ ମନା ମନକୁ ଆଉ ମୁଁ
ଆଣିବି ନାହିଁ ତା କଥା
କେତେ ରୂପ ତାର ଦିଶେ ଆନ ଆନ
ବଢ଼େ ନବ ନବ ବ୍ୟଥା
ଯେତେ ପର ମୋତେ କରେ ସେ ସୁନ୍ଦର
ତେତେ ଆପଣାର ହୁଏ ସେ ମୋହର
କହ ଜାଣେ ସେହି କି ମାୟା ହୃଧର
ମନ୍ଦ ମୋତେ କହ ସବୁ
ମନ୍ଦ ଭନ୍ଦୀବରେ କହିବ ଏଥର,
(ତାକୁ) ରବି ଚାହେଁ ଦୂର ନଭୁଁ ।
ତା' ଭିତରେ ଅଛି କହ କି ମୋହିନୀ
ଅଛି ବା ସ୍ୱର୍ଗର ସୁଧା ସଞ୍ଜୀବନୀ ।
ଶତ ପ୍ରତିଜ୍ଞା ମୋ ଭାସିଯାଏ କେଣେ
ଥରେ ଚାହିଁଲେ ଚରଣେ
ଜୀବନେ ନ ଥାଏ ତିଳେ ପ୍ରୟୋଜନ
ଲୋଡ଼େ ମୁଁ ଅମୃତ ମରଣେ ।
ସେହି ଦିଏ ଏତେ ଦୁଃଖ
ତା' ଲାଗି ପୁଣି ମୁଁ
ଜଗତ ଯାକରୁ
ହୋଇଛି ଛାଏଁ ବିମୁଖ ।
ନ ସାଧିଲେ ନିଜେ
ସାଧେ ପାଦ ଧରି
ନିଜର ଯାତନା

ନିଜେ ଆଣେ ବରି ।
ସାରା ସଂସାର ତା
ଦୋଷ ବଖାଣନ୍ତି
ମୁଁ ଦେଖେଁ ଗୁଣସାଗର,
ଚନ୍ଦ୍ରରେ କଳଙ୍କ
କହନ୍ତି, ଭାଳେଁ ମୁଁ
ସେ ଏକା ଅମୃତାକର ।

(ଆଗରୁ ବିଶାଖା ଆମ୍ବଗଛର କୋମଳ ପତ୍ରଗୁଡ଼ିଏ ଧରି ପହଞ୍ଚି ଶ୍ରୀମତୀଙ୍କୁ କୋମଳ ଇଙ୍ଗିତରେ କହିଲା ।)

ବିଶାଖା :

ନିଅ ଗୋ ସହି, ସହି
ଏ ନୂଆ ଆମ୍ବ ପତର
ଡାଳେ ଡାଳେ ବଉଳ
ମାଳ ଶୋଭେ କି ସୁନ୍ଦର ।
ଏ ପତର ବଡ଼ ଗୁଣର
ସଙ୍ଖାଳି ନୂଆ ଫଗୁଣର
ଶ୍ୟାମେ ନ ପାଇଲୁ ନାହିଁ
ଏ ପତର ରୂପ ଧ୍ୟାୟି
ପାସୋରି ସବୁ ବିକାର
ଜାଳା ମନର ।
ଦେବିକି ଖଞ୍ଜି
ଅଙ୍ଗେ ଅଙ୍ଗେ
ବଢ଼ିବ କାନ୍ତି
କେତକୀ ରଙ୍ଗେ
ଶ୍ୟାମ ଶୋଭା ଭ୍ରମେ ଲାଗିବୁ ମରମେ
ସାନ୍ତ୍ୱନା ଅବା ମୁହୂର୍ତ୍ତର ।

ଶ୍ରମୀତୀ :

ଆହା ! ସେଦିନ କି ଭୁଲିବି ଜୀବନେ
ପହିଲି ଯେ ଦିନ ଦେଖିଲି ନୟନେ
ନବ ଚୂତପତ୍ର
ସୁଷମା ଶ୍ୟାମର
ଥିଲି କି ଏ ଜଗତରେ
ଭୁଲିଲି ମୋହର
କୁଳ ମାନ ଜ୍ଞାନ
ଅନ୍ଧ ହେଲି ନିମିଷରେ

ସେହି ଦିନୁଁ ଝୁରି ଝୁରି
ବୁଲେଁ ବନେ ବନେ
ବିଜନେ ଗୋପନେ
ଶ୍ମଶାନ ମଣେ ମୋ ପୁରୀ ।

କେ କେତେ କହିଲେ ହତଭାଗିନୀ
ହେଲୁ ଆଗେ ଏଡ଼େ କୁଳନାଶିନୀ
ବୁଝି ନ ବୁଝିଲି
ଘେନି ନ ଘେନିଲି
ବଚନ ଗୁରୁ ଜନର;
ଶତ ସରିତରେ ନୀର ଥାଉଁ ଯହୁଁ
ଆଶ୍ରା କଲି ଜଳଦର
ଏବେ ପଡ଼ିଲା ମୁଣ୍ଡେ ବଜର ।
ସାନର କିଆଁ ଏ ଗୁମାନ ପଣ
ଆକାଶେ ଅଣ୍ଟାଳି ରଚିବା ଟାଣ
ବିଦ୍ୟୁତକୁ ଫୁଲମାଳି ମାନସିଲି
ଚାନ୍ଦେ ବଢ଼ାଇଲି ହାତ
ଦଦରା ବୋଇତେ ବସି ଅଜ୍ଞାନରେ
ଅକୂଳେ ମାଇଲି କାତ ।
ଯେ ନିଆଁ ଜାଳିଲି ହିଆରେ
ସହସ୍ର ସାଗର- ନୀର ଅଜାଡ଼ିଲେ
ନ ଲିଭି ବଢ଼ିବ କାୟାରେ ।
ସତେ ଆଉ ଦେଖା ନ ହେବ ଜୀବନେ
ବୁଲିବି ତା’ ନାମ ଗାଇ ବନେ ବନେ
ତାହାରି ଲାଗି ମୁँ ହେବି ବିରାଗିନୀ,
ଭସମ ବୋଳିବି ଅଙ୍ଗେ,
ଛିଣ୍ଡା କନ୍ଥା କେତେ ସ୍ୱମ୍ଳ ବାନ୍ଧିବି
ରଙ୍ଗାଇବି ଗେରୁ ରଙ୍ଗେ ।
ବାର ବରଷ ମୁଁ ତପସ୍ୟା କରିବି
ଚଉପାଶେ ଅଗ୍ନି ଜାଳି
ଇନ୍ଦ୍ର ପଦ ଯଦି ଲଭନ୍ତି, ପାଇବି
ନିଶ୍ଚେ ମୋ ଚିର-ସଙ୍ଗାଳି ।
ତା’ ବିନା ଜୀବନେ କିସ ଲୋଡ଼ା ମୋର
ତା’ ବିନା କି ହେବ ଘରେ
ଜହର ଖାଇ ବା ଜୀବନ ହାରିବି,
ପଶିବି ବା ପାବକରେ
ଝାସିବି ଯମୁନା ନୀରେ ।

ଦେଖୁଥିଲି ପରା ସେ ରୂପ-ରାଜୀବ
ତା' ରାଜୀବ କୁଞ୍ଜ ତୀରେ ।
ଦିଶେ ଦିଶେ ଅବା ଘୋଷିବେ ସକଳେ
ରାଇର ଅକୀର୍ତ୍ତି ବୋଲି
କହ କେ ଦେଖିଲା ଯାତନାର ଜ୍ୱାଳା
ଗୋପନ ମୋ ହୃଦ ଖୋଲି ?

(ଏଥି ପୂର୍ବରୁ ଦୂରରୁ ଫୁଲତୋଡ଼ା ସବୁକୁ ଏକାଠି କରୁ କରୁ ଧୀର ଗତିରେ ପହଞ୍ଚି ଜନୈକା ସଖୀ ଶ୍ରୀମତୀଙ୍କୁ କହିଲା ।)

**ଲବଙ୍ଗଲତା :**

ଭୁଲିଯା ଭୁଲିଯା ସହି ! ସେ ନାମ ଗୀତ,
ଜୀବେ ନ ଲଭିବୁ ଯାହା, ତାକୁ ଭୁଲିବା ହିତ ।
ଗୋଲାପ କୁଞ୍ଜରେ କୁସୁମ ତୋଳିଲେ
କଣ୍ଟା କି ନ ଯିବ ଗଳି
କେତକୀ କାନନେ ନ ଦଂଶିବ ଅହି
ଅରବିନ୍ଦ ବନେ ଅଳି ?

କିପାଁ ଅକାରଣେ ନ ହେବା କଥା
ମାନସେ ମନାସି ପାଉଛୁ ବଥା
ବନ ଫୁଲ ତେଜି ତାରା-ହାରେ କିପାଁ
ଶରଧା ବଳିଛି ମିତ,
ତାର' ପ୍ରୀତି ତିଳେ ସ୍ନେହ ବିନା ସହି !
ଜୀବ କି ଯିବା ଉଚିତ ?

(ବିକଳ କଣ୍ଠରେ ।)

**ଶ୍ରୀମତୀ :**

ସତେ ସେ କଳାଟି ଏତେ ସରି,
ଗୁଣ କିନ୍ତୁ ତା'ର ବାହୁନିବା ପାଇଁ
ମୋତେ ଅଣ୍ଟୁନାହିଁ ଦିବା ବିଭାବରୀ ।
ଏଡ଼େ ସେ କୁହୁକୀ କାଳିଆ
ବାସନା ମୋହର ହେଲେ ହୁଅନ୍ତି ମୁଁ
ତା' ପାଦର ଧୂଳି ଅଳିଆ ।
ଲାଖି ରହନ୍ତି ତା' ଦେହେ !
ଚାନ୍ଦରୁ କୌମୁଦୀ ଛଡ଼ାଇଲେ ଆଉ
ବଞ୍ଚିବ ସେ କାହା ସ୍ନେହେ ?
ରବି ଅବା ପଶ୍ଚିମରେ ଉଇଁବ
ତୁଷାର ତା' ଶୀତଳତା ତେଜିବ
ତଥାପି ତା' ବିନା ନାହିଁ ମୋର ଗତି

ଜଳ ବିନା ମୀନ ଅବା ବଞ୍ଚିବ,
ବୀଣାତାର ବିନା ରହିବ ତା' ସ୍ୱର,
ଶିଳା ପଛେ ତରଳିବ ।
କି ପ୍ରେମ ମନ୍ତର ପଢ଼ାଇଲା ମୋତେ
କହ ସେ କିବା ଗୁଣିଆ
ଯେତେଦୂରେ ମୋତେ ବରଜି ବସିଲେ
ଯେତେ ଅପମାନେ ମରମ ପୀଡ଼ିଲେ
ମୁଁ ତା' ପ୍ରେମଧନେ ରଙ୍କ ବଣିଆ ।
ଯେ ପାଦେ ପ୍ରହାରେ, ଲିହେ ତା ମଥାରେ
ସଖି ଏକି ଅଲାଜୁକ ପଣିଆ ।
କେତେ ତିଆରଚି ସାଥିଏ ।
ବିଷ ପରି ମଣି- ତାଙ୍କ ହିତ ବାଣୀ
ପଙ୍କରେ ପଣେ ମୁଁ ଛାଡ଼ିଏ ।
ଦୂରେ ଥାଉ ମୋର ପଦ୍ମ ତୋଳା; ମରେ
କାଳ କଳାନାଗ ଦଂଶନରେ
ତଥାପି ଚେତା ତ ନୋହିଲା ମୋହର
କହ ଭୁଲିଲି କି ମୋହନରେ ।
ସାରା ଅଙ୍ଗେ ମୋର ବିଷ ସଞ୍ଚରୁଛି
ଧରା ଦିଶେ ଆନ ଆନ
ମରୁ ବାଲି ପଥେ ମରୀଚି ପଛରେ
ଧାଏଁ କରି ଜଳଜ୍ଞାନ ।
(ଦୂରରୁ ଗୋଟିଏ ସଖୀ ଗାଇ ଗାଇ ପହଞ୍ଚିଲା)

**ମଞ୍ଜୁଳା :**

(ଆହା) ସକାଳରୁ ସଞ୍ଜେ
ତୁମରି ଲାଗି ସେ
ଅନାଇ ବସିଛି ପଥେ,
ଛାଡି ଥର ଥରେ
ଆଖି ଝର ଝରେ
ଆସିଲ ଆସିଲ ସତେ ।
ସାରା ପରାଣଟା ତୃଷାରେ ପୂରି
ସାରା ମରମଟା ହେଉଛି ଝୁରି ।
ଶିରାରେ ଶିରାରେ
ଚମକେ ବିଜୁଳି
ଛଳିରେ ଛଳିଲ ପରା
ଝିମି ଝିମି ଦେହ
ରୋମାଞ୍ଚ କ୍ଷଣକେ
ଅବିଶ୍ୱାସ ଘେରେ ଦୃଷ୍ଟା ।

ତୁଳାକୁ ତୁଳାକୁ
କାନ୍ଦିବସେ ମାନେ
ଜୀବନ ରହିବ ସତେ
ଏତେ ଦୁଃଖ ଦେବ
ଶ୍ୟାମଘନ ବୋଲି
ମନେ କେ ଯାଥାନ୍ତା ପ୍ରତେ ॥

(ନିକଟକୁ ଆସି ଶ୍ରୀମତୀର ଓଷ୍ଠରେ ହସ୍ତ ଦେଉଥିବା ଅନ୍ୟ ଗୋଟିଏ ସଖୀ ମଞ୍ଜୁଳାକୁ ଚାହିଁ ଗାଇ ଉଠିଲା ।)

**ବୃନ୍ଦାବତୀ :**

ଶ୍ୟାମ ବିନା ତା' ମନ କାହିଁରେ ତୋଷିବ,
ନୀରଦ ବିନା କି ନୀରେ ଚାତକ ରସିବ ?
ଶଶୀ ବିନା ହସିବ କୁମୁଦ କି ନୀରେ,
ରବି ବିନା ରାଜୀବ କି ବିକଶେ କାସାରେ,
ବିଭାବରୀ ବିନା ତାରା ନଭେ କି ଫୁଟିବ ?
ନ ବହିଲେ ମୃଦୁ୍ୟରେ ମଳୟ ମାରୁତ,
କୋକିଳ ଗାଇବ କାହୁଁ ଲଳିତ ସଙ୍ଗୀତ,
ଶୀତେ ପାଦପ ବପୁ କି ପଲ୍ଲବେ ଶୋଭିବ ?
ପିପାସା ଶମିବ ଓ ମରୀଚିକା ନୀରେ,
ତମସ ବିନାଶ କାହିଁ ଖଦ୍ୟୋତ ଜ୍ୟୋତିରେ,
ପ୍ରାଣବନ୍ଧୁ ବିନା ପ୍ରାଣ-ଆଶା କି ପୂରିବ ?
ଶ୍ୟାମଧନ ବିନା ରାଧା ମନ କି ରସିବ ?

(ଧୀରେ ଥରି ଥରି.....)

**ଶ୍ରୀମତୀ :**

ତଥାପି-ମନରେ କାହିଁ
କ୍ଷଣେ ଅବସାଦ ଆସଇ ନାହିଁ
ମରଣ-ଜିଣା ଏ ପ୍ରୀତି ସରି ମିତ !
ଆଉ କି ଅଛି ମୁଁ ପାଇ ?
ପ୍ରୀତି ବୋଲି କେବେ ଜାଣିଲି ସହି
(ଆନେ) ମିଛେ ମିଛେ ତୁଅଛି କହି
କିଶଳୟ ଅଙ୍ଗେ ଶ୍ୟାମଳ ସୁଷମା
ସେ କି ତା'ର ପ୍ରୀତି ଭାବ,
ଫୁଲ ଲହୁଣୀରେ କୋମଳତା ଭଳି
ପ୍ରେମ ଯେ ମୋର ସ୍ୱଭାବ ।
ଅଙ୍ଗେ ଅଙ୍ଗେ ମୋର ପ୍ରେମର ଧାର
ରକ୍ତ ବିନ୍ଦୁ ବିନ୍ଦୁ ପ୍ରେମର ହାର

ପ୍ରତି ଆବେଗର
ହୃଦ ସ୍ପନ୍ଦନର
ଶୁଣେ ମୁଁ ଅମର
ସଙ୍ଗୀତ ପ୍ରେମର ।
ପ୍ରୀତି ମୋ ହୃଦୟ ଫୁଲ
ସୌରଭେ ତାହାର
ନିଜେ ମୁଁ ଆକୁଳ
ପରକୁ ଦୋଷିବି
କିପରି ସଜନି !
ମୁଁ ତ, ତେଣୁ
କରି ବସେ ଏତେ ଭୁଲ । .
ନେତ୍ର ଦରପଣେ ଥିଲା ସେ ଛବି
ହୃଦପଦ୍ମ ଖୋଜୁଥିଲା ସେ ରବି
ମନ ଲୁହାଖଣ୍ଡ ସେ ଚୁମ୍ବକ ଲାଗି
ଯୁଗ ଯୁଗ ଥିଲା ଧାୟି,
ଆତ୍ମା ଖୋଜୁଥିଲା ସୁଧା ଆସ୍ୱାଦନ
ଚକ୍ଷୁ ଲୋଡୁଥିଲା ପରଶ ରତନ,
ତୃଷିତ ଚାତକ ଏ ପ୍ରାଣେ
ନବ ଜଳଧର ମଧୁ ଧାରା ଲାଗି
ଜନ୍ମେ ଜନ୍ମେ ଥିଲା ଚାହିଁ ।
ସୃଷ୍ଟି ମମ ଥିଲା ଅପୂର୍ଣ୍ଣ ସୁଦୀନ
ଜ୍ୟୋତି ପ୍ରତିମାଟି ମାତ୍ର ପ୍ରାଣହୀନ ।
ପ୍ରାଣ-ପାରାବାର ସେ ତରଙ୍ଗ ଗୋଟି
ଚୁମ୍ବନ ଲାଗି ଏ ଜୀବନ-ସୈକତ
ଅନାଗତ କେତେ ଦିବସ ଧିଆନେ
ରୁଦ୍ର ତପସ୍ୟାରେ ଥିଲା କି ରତ ।
ପ୍ରାଣ ମୁରଲୀର ପ୍ରତି ରନ୍ଧ୍ରେ ରନ୍ଧ୍ରେ
ଥିଲା ଯେ ଅବ୍ୟକ୍ତ ଯନ୍ତ୍ରଣା
ଅଧର ଦେଲା ସେ ପରଶି
ଉଠିଲା ମରମ ଉଲ୍ଲସି,
ସ୍ୱର ଲହରୀରେ ଭାସି ତ ଉଠିଲା
ବିଶ୍ୱେ ବାଜିଗଲା ମୂର୍ଚ୍ଛନା ।
ଉଷା ପାଟଳରେ ସେ କି ଅରୁଣିମା
ତାରା ଦୀପ୍ତ ହାସେ କି ଶୋଭା ମହିମା ।
ଫୁଲ କୁଞ୍ଜେ କୁଞ୍ଜେ ସେ କି ମଧୁଲୀଳା
ସେହି ଲୀଳା ଏ ମୋ' ପ୍ରାଣେ,
ବିଶ୍ୱେ ବିଶ୍ୱେ ଫୁଟି ଉଠିଛି ପରା ତା'

ରୂପେ ରସେ ଗନ୍ଧେ ଗାନେ ।
କୋଟି ବିହଙ୍ଗର କଣ୍ଠେ ତା' କାକଳି
ତା' ରଙ୍ଗେ ରଞ୍ଜିତ ଫୁଟେ ପଦ୍ମକଳି ।
ଦକ୍ଷିଣା ପବନେ ବହେ ସେ ସୁରଭି
ଶୁଭ୍ର ମଲ୍ଲିକା କାନନୁଁ
ସେ ଅତର ଅବା ଜନ ମନ ମୋହେ
କିଆ କପୁର ଚନ୍ଦନୁଁ ।

(ଶ୍ରୀମତୀ କହୁ କହୁ ଭାବାବେଶରେ ବିଭୋର ହୋଇଗଲେ । ସଖିମାନେ ପଲ୍ଲବରେ, ଅଞ୍ଚଳରେ ଏବଂ ହାତରେ ବ୍ୟଜନ କହିବାକୁ ଲାଗିଲେ ।)

(ଶ୍ରୀମତୀଙ୍କର ଅତି ପ୍ରିୟ ସଖୀ ଏ ଅବସ୍ଥା ଦେଖି ଚେତା କରିବାପର ବିରକ୍ତ ହୋଇ ଧିକ୍କାରି କହିଲେ ।)

ଲଳିତା :

ଅନା ନା ଅନା ନା ମନା କରିଥିଲୁଁ କେତେ
ଯାତନା ପାଇଲୁ ସିନା ଅକାରଣେ ଏତେ ।
ତା' ଚିନ୍ତାରେ ସ୍ୱର୍ଣ୍ଣ କାନ୍ତି ତେଜିଲା ତୋ' ଦେହ
ଦଣ୍ଡେ ତୋ' କଥା ତା' ମନେ ପଡ଼େ କି ସନ୍ଦେହ ।
ଫୁଲମାଳା ବୋଲି ଭଜିଲୁଟି ଅହି
ଚନ୍ଦନ ଭ୍ରମେ ଦହନେ ହେଉଛୁଟି ଦହି
ଜହର ଖାଇଲୁ ଜାଣି ଏବେ ମର୍ମେ ମର୍ମ ଚେତେ
ଭୁଲିଯା ଭୁଲିଯା ତାକୁ ସେତ ଅବିଶ୍ୱାସୀ ଏତେ ।
କେଡ଼େ ସେ ପାଷାଣ-ମନା
କେବେ କଲା ବିବେଚନା
ପ୍ରେମ ତା'ର ପ୍ରବଞ୍ଚନା
କଥା ତା ମିଛ ରଚନା !
ମନେ ପକାନା,
ମନେ ପକାନା (ଆଗୋ ସହି !)
କହନା ଆଉ କହନା
ବହନେ ଭୁଲିଯା ସହି ତା' କରଣୀ ଯେତେ ।

(ଶ୍ରୀମତୀ ଧୀରେ ଧୀରେ ଆଖି ଫିଟାଇ ଚାହିଁଲେ ଏବଂ କରୁଣ କଣ୍ଠରେ କହିଲେ)

ଶ୍ରୀମତୀ :

ସଖି ! ଏଥିରେ କି ଦୋଷ ମୋର
ଜାଳା ଗୁଣ ବହି ଦୋଷୀ କି ଅନଳ
ଲବଣ ଘେନି କି ଜଳଧିର ଜଳ
ଭୃଙ୍ଗ ଯଦି ମଧୁଚୋର ।

କଜଳ କଳା କି ଆପଣା ଇଚ୍ଛାରେ
ମୁଁ କି ପାଗଳିନୀ ମୋ ନିଜ ବିଚାରେ
ଭୁଲି ପାରିଲେ ବା ମନ ଚୋରକୁ ମୁଁ
ରହନ୍ତି ସୁଖେ ସଂସାରେ ।
ସେ ଦିନ ଆକାଶେ ବାଜିଥିଲା ବେଣୁ
ଚକିତେ ଶୁଣିଲେ ନଦୀତୀର ରେଣୁ
ତାଳେ ତାଳେ ବୀଚି ଉଠିଥିଲେ ନାଚି,
ହସି ଅନାଇଲେ ପ୍ରତୀଚୀ ପରାଚୀ,
ରବି, ବିନ୍ଦୁ ଇନ୍ଦୁ ଟିକା ଘେନି ବେନି
କୁମୁଦିନୀ ପାଶେ ହସିଲା ପଦ୍ମିନୀ
ଚିତ୍ତେ ମୋ ଛୁଟିଲା ତଡ଼ିତ,
କୋଳେ ତା'ର ଲୋଳେ କେଉଁ ସ୍ୱର୍ଗ ଲୋକ
ଲଭିଲି ମୁଁ ଚିରବାଞ୍ଛିତ ।
ଭସାଇ ଦେଲି ମୁଁ କଳସୀ ନୀରେ
ବସାଇଲି ଆଣି ହୃଦ-ବେଦୀରେ ।
ପ୍ରତି ଅଙ୍ଗ ମମ ପିଇଲା ପୀୟୂଷ
ଚେତନା ରାଇକୁ ହରିଲି
ଧନ୍ୟ ହେଲା ଆହା ! ଜୀବନ ଗୋଟାକ
କି ପୁଣ୍ୟ ଆନନ୍ଦେ ମଜିଲି ।
କହ ଦୂର୍ବାଦଳ ଘନ ଶ୍ୟାମଳ !
କାହିଁ ଛାର ଘାସ
ତା' ପରଶେ ପ୍ରାସ
ସେତ କୋମଳରୁ ବଳି କୋମଳ,
ତହିଁର ମାଧୁରୀ କେ ପାରିବ କଳି ?
ପରଶେ ପଥର ଯିବ ତା' ତରଳି
କ୍ଷଣେ ଭାଳି ଚିତ୍ତୁ ଚଞ୍ଚଳ ।
ପ୍ରତି ଅଣୁ ତାକୁ ଚିହ୍ନେ କି
ପ୍ରତି ରକ୍ତ କଣା
ସାଥିରେ ସେ ଜଣା
ଭୁଲେଁ ସେ ମୁଁ ବେନି ଭିନ୍ନେ 'କି ।
ଦୁଇ ଦେହ ! ଭ୍ରାନ୍ତି ସ୍ୱପନ,
ପ୍ରତି କୋଷେ ପରା ପ୍ରତିଭାତେ ରୂପ
ବିଶ୍ୱମୟ ଦିଶେ ବଦନ ।
ସେ କି ସୂର୍ଯ୍ୟେ ତେଜ, ପଦ୍ମେ
ଲାଜବୋଳା ମାଧୁରିମା !
ସେ କି ସଞ୍ଜ ସକାଳର ସିନ୍ଦୂର ସମ୍ପଦ
ତାରାମଣି ହାସ-ଗାରିମା

ଢଳେ ଘନୀଭୂତ ନୀଳିମା !
ସୁଧା ଚନ୍ଦ୍ରମାରେ
ବାସ ଫୁଲହାରେ
ମରମରେ ପ୍ରୀତି-ପ୍ରତିମା !

(ଦୂରରୁ ଫୁଲ ସବୁକୁ ଏକାଠି ଧରି ଶେଷ ସଖୀ ପହଞ୍ଚି ଗାଇଲା ।)

ଜାତିମାଳା :

କେତେ ତୁ ଅନାଇ ବସୁ ଅକାରଣେ ଆଖି
ଏ ଅନ୍ଧାର ତାରାଚନ୍ଦ୍ର ଏ ଶର୍ବରୀ ସାକ୍ଷୀ ।
ଶତ ଶରତ ଗଲାଣି ବିଫଳି
ବିଗତ ଶତ ବସନ୍ତ କୋକିଳ କାକଳି,
କୋଟି ପ୍ରାବୃଟ ଯାମିନୀ-ମେଘରେ ଦାମିନୀ
ଲୁଚିଲେ ଦେଖାଇ ଝଳି
ବସିଛି ଏକା ନିରିମାଖୀ
ନୟନର ଲୁହ ନୟନ କୋଣରେ
ସଖି ! ସେ ଗଲାଣି ଲାଖି ।

ଶ୍ରୀମତୀ :

ଅମୃତରୁ ସାର,
ତା' ନାମ କଣ୍ଠର
ଭୂଷଣ କଲିଣି ଏଣିକି
ହେଉ ଯା ଦୂଷଣ,
ହେଉ ଯା କଷଣ
ଦିନେ ଭୀତି ନାହିଁ ଟିକିଏ ।
ଯେଝା ଇଚ୍ଛା ଯାହା କହନ୍ତୁ
ମୁଖେ ମୋ କେହି ନ ଚାହାନ୍ତି
ଅଳିଆ ଗଦାକେ ଫିଙ୍ଗିଦେଇ ମୋତେ ।
ଅବଜ୍ଞାରେ ପାଦେ ଦଳନ୍ତୁ ।
ଅର୍ଚ୍ଚିତ ନିର୍ମାଖୀ ବୁଲିବି ସଂସାରେ
ଭିକାରୁଣୀ ବେଶେ ଦୁଆରେ ଦୁଆରେ
ଭଙ୍ଗା କେନ୍ଦରାରେ ଗାଇବି ତା' ନାମ
ପ୍ରାଣାରାମ ପ୍ରିୟ ଚିତ୍ତ, ପ୍ରାଣାରାମ
ସେତିକି ମୋ' ଧର୍ମ୍ମ ଧାରଣା
ଯୋଗ-ଯାଗ, ଜପ-ତପ, କାଷ୍ଠା-ନିଷ୍ଠା
ପୂଜା-ପାଠ ମୋତେ ଅଜଣା ।
ମୋ ଦେବତା ମୋର ସଙ୍ଗାତି
ତା ବିନା ଶୂନ୍ୟ ମୋ ଚଉଦ ଭୁବନ
ତା ବିନା ମୁଁ ଦୀନ କଙ୍ଗାଳି ।

କି ଲୋଡ଼ା ଅବା ମୋ ଚିତା ଚନ୍ଦନେ
କି ଲୋଡ଼ା ମୋ ସ୍ତବ ସ୍ତୁତି ବନ୍ଦନେ
ଫନ୍ଦା ଧନ ପରି ହୃଦରେ ସଞ୍ଚିଛି
ଧାୟୁଛି ଜାଗରେ ଶୟନେ ।
ତା' ବିନା ଚୌଦିଗ ଅନ୍ଧାର
ମୋ' ଅନ୍ଧ ଲୋଚନ
ରବି ସେ ମୋହନ
ତା' ବିନା ରିକ୍ତ ମୋ' ସଂସାର ।

ମଞ୍ଜୁଳା :

ମାନସ ମନ୍ଦିରେ ପ୍ରେମ ସୁନ୍ଦର
ପ୍ରେମସୁନ୍ଦରେ ରାଜେରେ
ମରମ-ତାରେ ବାଜେ ମଧୁରେ
ପ୍ରେମସୁନ୍ଦରେ ବାଜେରେ ।
ଦାମିନୀ କନକେ ନୀରଦ ଶ୍ୟାମ
ବସନ୍ତ ବନେ ପୁଷ୍ପ ଦାମ
ଲତା ପତରେ,
ଗିରି ସାଗରେ,
ପ୍ରେମସୁନ୍ଦର ସାଜେ ରେ !
ବିଶ୍ୱ ବଂଶୀରେ ଅମୀୟ ତାନ
ରନ୍ଧ୍ରେ ରନ୍ଧ୍ରେ ତା' ନାମ ଗାନ
ହୃଦୟ କୁଞ୍ଜେ
ଫୁଟେ ମଞ୍ଜରୀ
ପ୍ରେମସୁନ୍ଦରେ ଲାଜେରେ ।

ଶ୍ରୀମତୀ :

ସଖୀ ସୁନ୍ଦର ବୋଲି କେ କହିବ
ସୁନ୍ଦର କି ଅଛି ତା ବିନା ଜଗତେ
କାହିଁରେ ବା ମନ ମୋହିବ ।
ସେ ଥିଲାକୁ ଅବା ଫୁଲ ଦିଶେ ଚାରୁ
ଶଶୀ ଶୋଭାମୟ ତାରି ସୁଷମାରୁ ।
ମୁରଲୀ ତା' ମୁଖେ ବାଜଇ ମଧୁରେ
କି ମଧୁ କରିବି କଳନା
ରୂପ-ସାଗରେ ମୁଁ ବୁଡ଼ି ତ ମଲିଣି
କି ରୂପ ଦେଖିବି କହନା ।

ଲବଙ୍ଗଲତା :

ଚାରିଦିଗେ ଛୁଟେ ଆଜି ରୂପର ନିର୍ଝରୀ ।
ରୂପେ ହସେ ଶଶୀ ସୁମନ ଫୁଟେ ତାରା ମଞ୍ଜରୀ ।

ଅନନ୍ତେ କାନ୍ତ ନୀଳିମା ଭାତି
ଚିର ଉଲ୍ଲାସ ପୂର୍ଣ୍ଣିମା ରାତି
ତଟୀନୀ-ଅଙ୍ଗେ
ରୂପ ରଙ୍ଗେ
ଖେଳେ ଅମୀୟ ଲହରୀ ।

ଶ୍ରୀମତୀ :

ମନେହୁଏ ଅବା ଛାଡ଼ି ଘରଦ୍ୱାର,
ଅତି କ୍ରମି ଯାନ୍ତି ଅଖିଳ ସଂସାର,
ପହଞ୍ଚନ୍ତି ଅବା ଏପରି ଲୋକରେ
ପାଆନ୍ତି ତାହାକୁ ସମଗ୍ର ପ୍ରାଣରେ
ମୁଁ ତାହାର ସେ ମୋହର ।
ଯୁକ୍ତ ବେନି ପରସ୍ପର
ଅଭିନ୍ନ ଅଛିନ୍ନ ଯୁଗ ଯୁଗାନ୍ତରେ ।
ବିଶ୍ୱେ ସେ ଦିନ ଜାଗନ୍ତା କି ଗୀତ,
ଆକାଶୁ ଚାହାନ୍ତେ ତାରକା ଚକିତ
ପ୍ରେମର ଜୟ-
ମରଣର ଲୟ
ମହାକାଶ ତଳେ ଉଠନ୍ତା ସଙ୍ଗୀତ
ଅଣୁ ପରମାଣୁ ହୁଅନ୍ତେ ନନ୍ଦିତ ।
ଦିଗନ୍ତେ ଦିଗନ୍ତେ ହୁଅନ୍ତା ପ୍ରଚାର
ଉର୍ମି ଛନ୍ଦେ ଛନ୍ଦେ ନାଚି ପାରାବାର
ବେଣୁ ବନେ ବାଜି ମଳୟ ଆକୁଳ
ଫୁଲେ ଫୁଲେ ଚୁମ୍ବି ହୁଅନ୍ତା ଉତ୍‌ଫୁଲ୍ଲ
ସେ ଦିନ ଆସିବ ସତେ
ଦିନ ଗଣି ଗଣି ଚାହିଁବି କେତେ ମୁଁ
କହ କାହା ଆଶା ପଥେ ?
ଅପଲ୍ଲ-ଅଶ୍ରୁ-ଜଳ-ଜଳ ନୟନରେ-

ଶ୍ରୀମତୀ :

ସେ ତ ଆଦରର ଧନମଣି ।
ମୋ' ପ୍ରାଣ ରତନ ହୃଦୟ ମୋହନ
ପୂର୍ଣ୍ଣ ପ୍ରେମ-ସୁଧା ଖଣି ।
ପରମ ସୁନ୍ଦର ପ୍ରେମ-ପ୍ରଭାକର
ମୋ' ଆତ୍ମା-କମଳ ବନ୍ଧୁ ସୁବିମଳ,
ମୋର ସର୍ବସାର ଶକତି ଆଧାର
ପୁଣ୍ୟମୟ ଗୁଣମଣି ॥୧॥
ପବନେ ଉଚ୍ଛୁଳେ ତା' ସ୍ୱର-ଲହରୀ

ଫୁଲେ ଫୁଲେ ଫୁଟେ ତା' ରୂପ ମାଧୁରୀ
ବାତୁଳ କଲା କି ଅତୁଳ ଆନନ୍ଦେ
ମନ ମୋର ନେଲା କିଣି ॥୨॥
କି କହିବି ଆଉ ନ ଆସଇ କଥା,
ଚରାଚରେ ପରା ବାଜଇ ମୋ ବଥା
ପୁଲକ ଆକୁଳେ ଭାସେ ନେତ୍ର ଜଳେ
ଦିବାନିଶି ଗୁଣ ଗୁଣି ॥୩॥
ଅସାର ସଂସାରେ ନାହିଁ ମୋର ଆଶ
ମାର୍ଗେ ଶୀତଛାୟା ଶ୍ରୀପଦ-ସାରସ
ସେ ଏକା ମୋ ଧନ ସେ ଏକା ମୋ ଧ୍ୟାନ
ଚିତ୍ତେ ପ୍ରେମ ଚିନ୍ତାମଣି ॥୪॥
(ସଖିମାନେ ଆଶ୍ୱାସ ବଚନରେ)

**କମଳା :**

କିଶୋରି ଗୋ' !
କାହିଁକି କାନ୍ଦୁ ଏତେ କିଶୋର ଲାଗି
ବୀଣା ଯଦି ତା'ର ରାଗିଣୀ ତେଜନ୍ତା
ତୋତେ ସେ ପାରନ୍ତା ତ୍ୟାଗି ।

**ବିଶାଖା :**

ସୁନ୍ଦରି ଗୋ,
ଫୁଲ ମାଳ ଫିଙ୍ଗି କହ କାହିଁ କେହି
ଅହି କି କରଇ ଗେଲ ?
ହୀରକ ଭୁଲି କେ ଆଦରେ କରକା,
ସୁନା ପାସୋରି ରସେ ଭେଲ ?

**ଲବଙ୍ଗଲତା**

ମାନିନି ଗୋ !
ବୃଥା ଅଭିମାନେ କିପାଁ ତୁ ମରୁ,
ଶିରୀ ଶୋଭାରାଶି ସାରୁ ଅଙ୍ଗରୁ,
କିପାଁ ଝୁରୁ ଏତେ ଦିନ ଯାମିନୀ ଗୋ ?

**ମଞ୍ଜୁଳା**

ମୋହିନୀ ଗୋ !
ତୋ'ବିନା ଜୀବନେ ଶ୍ୟାମର କି ପ୍ରୟୋଜନ
ତୋ ବିନା ଶ୍ୟାମର କି ପ୍ରେମର ଆୟୋଜନ
ଚିର ତରୁଣୀ ତୋ ରୂପ ରାଜୀବର
ମଧୁକର ସିନା ସେ ସୁଜନ ।

(ଶ୍ରୀମତୀ ବାୟାଣୀ ଭଳି ହୋଇ ଯିବା ଏବଂ ସଖିମାନେ ତାଙ୍କୁ କୋଳ କରି ଧରିଥିବା) (ଅତି ବିକଳ କଣ୍ଠରେ ଲଳିତାଙ୍କୁ ଗାଢ଼ ଅଶ୍ଳେଷରେ ଏବଂ ମୁଖକୁ ଧାରଣ କରି-)

ଶ୍ରୀମତୀ :

ଭୁଲାନା ଭୁଲାନା ସହି ଭୁଲିଛି ମୁଁ ବହୁତ
ଶ୍ୟାମ କପଟ-ପ୍ରେମିକ ତୁ ନିଜେ କହୁ ତ ।
ଗଳାରେ ସେ ଦେଇ ଛୁରୀ
ବିଜେ କଲା ନିଜ ପୁରୀ
ମଲି କି ବଞ୍ଚିଲି ଦିନେ ଆସି ନ ଖୋଜିଲା
କମଳା ବିଳାସ ଅଳି-
ମଲ୍ଲୀମାଳେ ମଜିଲା ।
କେ ସହିବ ଏ କଷଣ ସହୁ ଭଲା ବହୁତ
ତା'ପରେ କହିବ କଥା ଜୀବେ ଆଗେ ରହୁତ ।

ଧୀରେ ଧୀରେ ଚିତ୍ରପଟର ପତନ

ପ୍ରଥମ ଅଙ୍କ ସମାପ୍ତ

## ନବ ନୀରଦ

ଜଣେ ଦେହ ଜଣେ ଦେହରେ ଜୀବନ,
ଜଣେ ସ୍ନେହ ଜଣେ ସ୍ନେହରେ ମୋହନ ।
କେ କାହାର କେତେ କେ ପାରିବ କହି
କେତକୀ ଦଳରୁ କେ ପୋଛିବ ଝଳି ?
କପୁରଦେହରୁ କେ ହରିବ ବାସ ?
ଗୋଲାପ ଲପନୁଁ ଛଡ଼ାଇବ ହାସ ?

ଦୃଶ୍ୟ :

(ଯମୁନା କୂଳ-କଦମ୍ବ ମୂଳ, ଦୂରେ କୁଞ୍ଜବନର ମଧୁମୟ ସୌନ୍ଦର୍ଯ୍ୟ । ସତୃଷ୍ଣନୟନ ଶ୍ରୀକୃଷ୍ଣ ବେଣୁ ହସ୍ତରେ ଯମୁନାର ତରଙ୍ଗ ପ୍ରତି ଚାହିଁଅଛନ୍ତି ।)

ଶ୍ରୀକୃଷ୍ଣ :

ହୃଦେ ଜାଗେ ଉଲ୍ଲାସ
ଉଲ୍ଲାସ ଆଜି ଉଲ୍ଲାସ ।
ବରଷା ଦେଲାଣି ମଧୁବାରି ଧାରା
ବସନ୍ତ ଦେଲାଣି ଫୁଲ
ଶରତ ଦେଲାଣି ମେଘର ଶୁଭ୍ରତା
ଶିଶିର ହିମାନୀ ଠୁଳ ।
ଆଜି ଆକାଶୁ ଓହ୍ଲାଇ ଆସ
ଆଲୋକ ଅମୀୟ ପାଶ
ନୟନ ମନର ଲାବଣ୍ୟ ପସରା
ମୁଖେ ଫୁଟୁ ମୃଦୁ ହାସ ।
ଫୁଟ ଲୋ କମଳ-କଳି
ଗାଅରେ କୋକିଳ ଅଳି

ଷଷ୍ଠୀତାରାହ୍ବାରେ ରଚ ଗଳାହାର
ତରଙ୍ଗେ ଦୋଳାଅ ବାସ ।
(ଚତୁର୍ଦ୍ଦିଗକୁ ଛନ ଛନ ନେତ୍ରରେ ନିରୀକ୍ଷଣ କରି)

ଶ୍ରୀକୃଷ୍ଣ

ସେ କି ସୃଷ୍ଟି ରାଇଜେ ସାର ।
ଦଳା କଜ୍ଜଳରୁ କଳା ଜୀମୁତରୁ ବଳେ ସୁଷମାରେ
ଚିକ୍କଣ ଚିକୁର ଭାର ।
ସୁନା ଝଳି ଘେନି ଲବଣୀ ହୁଅନ୍ତା
କଳନ୍ତି ବା ରୂପ ତାର ।
ସତେ କେତକୀକମଳ କାନ୍ତି
ଗୋଳି ହେଲେ ଅବା ଫୁଟି ଉଠନ୍ତା ସେ
ଅମୃତ ତନୁ ଭାତି ।
ମେଘ ଅଙ୍ଗେ ମିଶି ବିଜୁଳି ତରଙ୍ଗ
ଫୁଟନ୍ତା କି ଅରବିନ୍ଦ
ତହୁଁ ରସନ୍ତା କଳା ମିଳିନ୍ଦ ।
ଦେବ ସଭରଭ ଝୁରି
ଚନ୍ଦନେ ଚୂଆ କସ୍ତୁରୀ
ଗୋଳି ଦେଇ ତାର ପାଖୁଡ଼ା ପେଡ଼ିରେ
ନେଇ କେ ଦିଅନ୍ତା ଭରି ।
ଚରଣ ଚୁମ୍ବଇଁ ଯହିଁ
ଚମ୍ପା ପଦ୍ମ ଫୁଟେ ତହିଁ
ସୂର୍ଯ୍ୟ ତେଜରେ ଜ୍ୟୋତ୍ସ୍ନା ବିକାଶେ
ଚଞ୍ଚଳା ସ୍ଥିର ରହି ।
ଗଜଗାମିନୀର ଗଳା ମୋତିହାର
ଶିରୀକି ତାରକା ଲୋଡ଼ଇ ।
(ଲୁଚି ଲୁଚି ପତ୍ର ଆଢୁଆଳରୁ ବାହାରି ପଡ଼ି ନାଚି ନାଚି ଶ୍ରୀକୃଷ୍ଣ ସମ୍ମୁଖରେ)

ସୁବଳ :

ସଖା, ତୋହର ପାଇଁକି ଝୁରି ଝୁରି
ସୁଧା ଢଳ ଢଳ
ଅଙ୍ଗ ନିରିମଳ
କୋମଳ କାଳୀକୁ ଦେଲୁ ସାରି ।
ତୁଳୁ ବନେ ବନେ ଉଦାସ ବଦନେ
ଛାଡ଼ି ତୋ' ରୁଚିର ପୁରୀ ।
ତା'ର, ନେତ୍ର ଛଟକେ ଅଟକେ ପଡ଼ିଲୁ
ହଜାଇ ଦେଲୁ ତୋ' ଧୃତି ।
ଆକଟ ନ ଘେନି ନିକଟେ ଗମିଲୁ
ବଣାକଲୁ ଚିତ୍ତ-ବୃତ୍ତି ।

ଚପଳା ଲୀଳାରେ ଚିତ୍ତ ମଜାଇଲୁ
ବଜର କଲୁଟି ସାର
ମୃଣାଳିନୀ ମୋହେ କଲୁକି ମୋହନ !
ଫଣିନୀ କି ଗଳାହାର ।
ସେତ ନ ଚାହିଁଲା ଫେରି ଠୁଳେ
ତୋତେ ଛଳି ଚାଲିଗଲା ହେଳେ
ତାର କୋମଳ ଚରଣ କମଳ ତଳେ କି
ତୋର ଶୀଳା-ମନ ଦେଲା ଚୂରି ।
(ସୁବଳକୁ ଆଶ୍ଳେଷରେ ଧରି ଓଷ୍ଠସ୍ପର୍ଶ ପୂର୍ବକ)

ଶ୍ରୀକୃଷ୍ଣ-

ସଖା ! ଏଇପଥେ ଗଲା ଚାଲି
ମରମେ ବାଜିଲା ବାସନା-କତୁରୀ
ଧୈର୍ଯ୍ୟ ମୋ’ ଦେଲା ଟାଳି ।
କୂଳଁରେ ଉଇଁଲା ସହସ୍ର ଶଶୀ
ଶତ ତାରା ଅବା ପଡ଼ିଲେ ଖସି
ନନ୍ଦନ ନବ ଫାଲ୍ଗୁନ ଶୋଭା
ଅବନୀରେ ଦେଲା ଢାଳି ।
ଦେଖୁତ ଆଶା ନ ପୂରିଲା
ବେନି ନୟନ ମୋ’ ଝୁରିଲା,
କ୍ଷଣେ ତାର ରୂପ ଦରଶନ ଆଶେ
ବୁଲିଲି ଦିବସ ଯାମିନୀ
ବନେ ବନେ ନିତି ବଜାଇ ବାଂଶରୀ
ସୁମରି ସେ ରୂପ ଦାମିନୀ ।
ଯମୁନାର କୂଳେ କେତେ ନିଶି ଭୋଳେ
ଉଜାଗରେ ଦେଲି ସାରି
କଦମ୍ବ କମଳେ ଗୁନ୍ଥି ବନମାଳା
ଫିଙ୍ଗି ମୁଁ ଅଇଲି ଚାଲି ।
(ହଠାତ୍ ଉପସ୍ଥିତ ହୋଇ ଶ୍ରୀକୃଷ୍ଣଙ୍କୁ ଲକ୍ଷ୍ୟକରି)

ସୁଦାମ :

ଯଦୁମଣି ! ତୋ ନୟନ ମଣି ସେ କେ ରମଣୀ ।
ଚିତ୍ତ-କୁମୁଦ-ମୋଦିନୀ, ଇନ୍ଦୁସୁଧା-ଖଣି ।
କିଏ ସେ ନବ ନଳିନୀ
ନବ ରବି ବିନୋଦିନୀ
କା’ରୂପ କୁସୁମ-ଦାମେ ଥକି ନୀଳମଣି ।
କିଏ ତୋ’ ବଇଁଶୀ ସ୍ୱର ବିଭାସ ରାଗିଣୀ ।
ନୀରବ ନିଶାର ସ୍ୱପ୍ନ କୁଞ୍ଜ ବିହାରିଣୀ

ମଧୁ ଯଉବନ ତରଙ୍ଗ ରଙ୍ଗିଣୀ
ଚାରୁ ସରିତର ପ୍ରଣୟ ତରଣୀ ।

**ଶ୍ରୀକୃଷ୍ଣ :**

ସଖା ! ସେ ଆଉ ମୁଁ-
ଜଣେ ଦେହ ଜଣେ ଦେହରେ ଜୀବନ
ଜଣେ ସ୍ନେହ ଜଣେ ସ୍ନେହରେ ମୋହନ,
କେ କାହାର କେତେ କେ ପାରିବ କଳି
କେତକୀ ଦଳରୁ କେ ପୋଛିବ ଝଳି ?
କପୂର ଦେହରୁ କେ ହରିବ ବାସ ?
ଗୋଲାପ ଲପନ୍ଁ ଛଡ଼ାଇବ ହାସ ?

**ସଖାମାନେ :**

ରହସ୍ୟ ସୃଷ୍ଟିର ସାର ପ୍ରକୃତିର
ଧୂଳି ଯଥା ଧରଣୀର
ତେବେ-ଗଲାଣି ସେ ଦିନ ମନେ ପଡ଼େ ବନ୍ଧୁ
ତୁ ଆଉ ସେ ।

(ସୁବଳ ସୁଦାମ ଉଭୟେ ଏକାଠି ରହି ଶ୍ରୀକୃଷ୍ଣଙ୍କୁ ନାନା ଭଙ୍ଗିତରେ ନାଚି ନାଚି କହିଲେ)

ପ୍ରେମ ରାଇଜର ରାଜାପାଖେ ପ୍ରେମ ରାଇଜର ରାଣୀ
ନିଖିଳ ବିଶ୍ୱେ ଉଚ୍ଚାରିଲା ଯେବେ ମିଳନ ମଙ୍ଗଳ ବାଣୀ
ସେଦିନ ସାଗର ତରଙ୍ଗ ରଙ୍ଗେ
ମିଶିଗଲା ମୃଦୁ ସରିତ ଧାର
ନବ ନୀରଦରେ ମିଶିଲା ଛନକେ
ପୁଲକେ କମଳ ବିଜୁଳି ହାର !
ପ୍ରେମ ରାଇଜର ସୂର୍ଯ୍ୟ ପାଶେ ପ୍ରେମ ରାଇଜର ଶଶୀ
ନିଖିଳ ବିଶ୍ୱ ବାଜିଗଲା ଯେବେ ମିଳନ ମଙ୍ଗଳ ବଂଶୀ
ସେଦିନ ଗଗନେ ମଞ୍ଜୁଳାଲୋକେ
ଉଜ୍ଜ୍ୱଳ ଗ୍ରହ ତାରାକାମାଳା
ଲକ୍ଷ କୁସୁମ ବକ୍ଷ ସଜରେ
ପୂର୍ଣ୍ଣ ପ୍ରଣୟର ବରଣ ଡାଲା ।

**ଶ୍ରୀକୃଷ୍ଣ :**

ଗଲାଣି ସେ ଦିନ ସଖା ଗଲାଣି, ଗଲାଣି-
ପ୍ରାଣେ ଅଛି ମାତ୍ର ସ୍ମୃତି ତାର
ମାନସ ସଦନ୍ଁ ତାହା ନେଇଛି ମେଲାଣି
ଅଛି ମାତ୍ର ମରମରେ ଗାର !
ସେଦିନ ଆହା ସେଦିନ କି ଦିନସେ-
ମୋ ଜୀବନ କ୍ଷୁଦ୍ର ପରିସରେ,
ମୋ' ଜୀବନ ସସୀମ ବିସ୍ତାରେ,

ସେଦିନ ଏ ଦରିଦ୍ରର କ୍ଷୁଦ୍ର କୋଠା ଘରେ
ସଞ୍ଚିତ ଅମୂଲ୍ୟ ନିଧି ଅପୂର୍ବ ରତନ !
ସେ ଦିନ ଯେ ଦିନ ସଖା ଦୂର ଦିଗବଳୟେ
ଭାସି ଉଠିଥିଲା କ୍ଷୁଦ୍ର ନକ୍ଷତ୍ର ମୂରତି,
କ୍ଷୀଣ ଜ୍ୟୋତିଃ କଣା ତା'ର ନୟନର ପ୍ରିୟ ।
ପ୍ରଶାନ୍ତ ସାଗରମମ ମାନସେ ସେଦିନ,
ଉଠିଥିଲା କ୍ଷୁଦ୍ର ଏକ ଆକାଂକ୍ଷା-ତରଙ୍ଗ
ଦୂରେ ସେହି ବହୁଦୂରେ ଦୂର ତମୋତଳେ
ଅର୍ଦ୍ଧାଲୋକେ ଦରସ୍ଫୁଟ ବଙ୍କିମ ଚନ୍ଦ୍ରମା
ଦ୍ୱିତୀୟାର ବାତାୟନ ବନ୍ଧେ ନିହି ଶିର
ମୋ ନୟନ ନିବଦ୍ଧ ସେ-
ଦୂରାଗତ ରଜତ ରଶ୍ମିରେ ।
ଅବା ପତ୍ର ଅନ୍ତରାଳେ ଅଳ୍ପ ଉନ୍ମୀଳିତ
ମଲ୍ଲିକା ମଞ୍ଜୁରୀ
ଧୀର ସାନ୍ଧ୍ୟ ସମୀରଣେ ଛାଟନ୍ତା ସୌରଭ ।
କ୍ଷୁଦ୍ର ମୋ କଳ୍ପନା କେତେ
ଉଠିବ ସେ ଉଚ୍ଚେ
ପ୍ରାଣେ ଆଣି ସଞ୍ଚିବ କିପରି
ସୁଦୂର ତାରକା ଜ୍ୟୋତିଃ ଅପୂର୍ବ ଗରିମା ?
କାହୁଁ ପାଇବି ମୁଁ ଦୀନ
ନୃପ ନିକେତନ ଶୋଭୀ ମାଣିକ୍ୟ ମଞ୍ଜୁଷା ?
ବ୍ୟଥିତ ଅନ୍ତର ମୋର-
କରୁଥିଲା କି କରୁଣେ ନୀରବ ବିଳାପ
ଅନ୍ତର ଅନ୍ତର ତମେ ତା'ର ଆତ୍ମା ପୁରେ
ବାଜି ଉଠିଲାକି ମୃଦୁ ମଧୁର ଝଙ୍କାରେ
ପ୍ରତିଧ୍ୱନି !
ତଡ଼ିତେ ତଡ଼ିତ ଅବା କଲା ଆକର୍ଷଣ ।

ସୁଦାମ-

ସେ ଦିନ ସେ କଥା ସେ ପ୍ରେମବ୍ୟଥା
ସେ ମଧୁ ମିଳନ ମିଳିବ କି ? (ସଖା ପୁଣି)
ସେ ରୂପ ସେ ରଙ୍ଗ ସେ ସୁଧା ତରଙ୍ଗ
ସେ ଚାନ୍ଦିନୀ ଛଟା ଫୁଲ ବନେ
ଆଉ ଝଳିବ କି ?
ସେ କଳା ମେଘରେ ବିଜୁଳି ଚମକ
ଯମୁନା କଲ୍ଲୋଳେ ଆକୁଳ ପୁଲକ
ନୀପେ ଫୁଲ ସାଜ

କିଶୋରୀର ଲାଜ

ମୟୂରର ନାଚ ତୋ' ହୃଦେ ନାରାଚ
ନୀଳ ନୟନେ ସେ ବିନ୍ଧିବ କି !!
ସେ ସଞ୍ଜ ଗୋଧୂଳି ଆକାଶର ଶୋଭା
ସେ ପ୍ରୀତି-ବାତୁଳୀଶିରୀ ମନୋଲୋଭା
ସେ କେଶ ସେ ବେଶ, ସେ ହାସ, ସେ ଭାଷ
ଗଳାରେ ସେ ଭୁଜ ଛନ୍ଦିବ କି ?
ସେ ବାଣୀ ସେ ଠାଣି, ସେ ବାଙ୍କ ଚାହାଣୀ
ଆଉ ଥରେ ତୋତେ ଚାହିଁବ କି ?
ସେ କୋହ, ସେ ଲୁହ, ସେ ମାନ ସେ ସ୍ନେହ
ଆଉ ଏ ଜୀବନେ ପାଇବ କି ?

ଶ୍ରୀକୃଷ୍ଣ-

ସତ୍ୟ ସଖା !
ଦୂରବନ ଅନ୍ତରାଳେ ବାଜିଥିଲା ବିନୋଦିଆ ବୀଣା
ଚାହିଁଥିଲି ଚକିତେ ଉନ୍ମନେ,
ଅଶରୀର ସ୍ୱର ମାତ୍ର ଭେଦିଥିଲା ମର୍ମରନ୍ଧ୍ରେ ରନ୍ଧ୍ରେ
ଆତ୍ମହରା ଏ ଅନ୍ତର,
ଦେହ ପିଞ୍ଜରାରୁ ଫିଟି ପଳାଇଥିଲା କି
ଚେତନା-ସାରିକା ।
ସ୍ପନ୍ଦନେ ସ୍ପନ୍ଦନେ ହୃଦେ ଉଠିଥିଲା ଊର୍ମି !
ରୋମାଞ୍ଚ ସ୍ୱେଦିତ ଦେହେ ପ୍ରଫୁଲ୍ଲ ନୟନେ
ଚାହିଁଥିଲି ସ୍ୱରଧାରା ନୀର ଝରା ସନ୍ଧାନରେ
ବହିଥିଲା ପ୍ରାଣେ ପ୍ରେମ ଫଲ୍ଗୁ
ଅଜ୍ଞାତେ ଗୋପନେ ହୃଦ ବାଲିଶେଯ ତଳେ,
ଗଣ୍ଠିଧନ ସରି ତାହା ଲୁଚାଇ ଥିଲିଟି
ଲୋକ ଲୋଚନରୁ ।
ସଂସାର ସେଦିନ ମୋ' ମାନସ ପଟୁଁ
ପୋଛି ଯାଇଥିଲା ପରା ଅପୂର୍ବ କି କୁହୁକ ଇଙ୍ଗିତେ
ନ ଜାଣେ ମୁଁ ଥିଲି କିବା ସଶରୀରେ
ଧରଣୀର କ୍ଷୁଦ୍ର ପ୍ରାଣୀ ସମ ।
କ୍ଷୁଦ୍ର ନ୍ୟାୟାନ୍ୟ କ୍ରୁର ବେଷ୍ଟନୀର କଠିନ ଶୃଙ୍ଖଳେ ।
ସେଦିନ ଉଦାସ ଯୁବା ଆତ୍ମହରା ଲୀନ ଯାର
ଅନ୍ତର ଦେବତା-
ଚେତନାର ମହା ପାରାବାରେ ।
ଶରୀର ବନ୍ଧନ ଯାର ଥିଲାମାତ୍ର ନୟନର ଭ୍ରମ
କାହିଁ ସେ ବିହରୁଥିଲା କଳ୍ପନାର କଳ୍ପଲୋକେ

ମୁକ୍ତିର ଆନନ୍ଦ ସ୍ୱାଦେ ଅଧୀର ଉନ୍ମତ୍ତ ।
ଚିର ଅଭ୍ୟୁଦୟେ, ଚିର ଜନମେ ମରଣେ
ସୀମା ହୀନ ଅନନ୍ତ ଆକାଶେ
ବିହରୁଥିଲେ କି ବେନି ଲୋକୁଁ ଲୋକାନ୍ତରେ
ବେନିର ଉଦ୍ଦେଶେ ।
ଅପୂର୍ବ ମିଳନେ କ୍ଷଣେ ମିଳିଲେ କି ବେନି
ପରସ୍ପର ଅଙ୍ଗେ
କେନ୍ଦ୍ରଚ୍ୟୁତ ଗ୍ରହଦ୍ୱୟ ମହା ବିସ୍ଫୋରଣେ ।
କି ଉଦ୍ଭ୍ରାନ୍ତ କି ଉଦ୍ଦାମ କି ଅପୂର୍ବ
ରହସ୍ୟ ମଣ୍ଡିତ ।
ବଜ୍ରବହ୍ନି ସମ୍ମିଳନ ସେ କି, ଶତସୂର୍ଯ୍ୟ ସନ୍ଦୀପିତ ।
ଅବା ମହାର୍ଣ୍ଣବ ତୋଳି ବୀଚିମାଳା ବାହୁ
ଆଲିଙ୍ଗନ ଆଶେ ଆକୁଳିତ ପୂର୍ଣ୍ଣ କଳାଙ୍କରେ ।
କି ବିଶାଳ ଉନ୍ମାଦନା ପ୍ରାଣେ ପ୍ରାଣେ ।

ସୁବଳ–

ସାଧୁବଟି ବାଦ ଜଗତର ବାଧା
(ତୋର) ଶରଧା ଯିବଟି ସରି !
ସୁନ୍ଦରେ ସୁନ୍ଦରେ ମୋହନ ମିଳନ
ସଂସାରେ ସ୍ୱପ୍ନ ପରି !
କଳା କୁବଳୟେ କନକ କିରଣ !
ମଉଳି ଯିବଟି ଝଳି,
ଝଟକ ହାଟକ କେତକୀର କୋଳେ
ପଶିବ କି ନୀଳ ଅଳି !
ଶରତର ଶ୍ୟାମେ ବସନ୍ତ କୁସୁମ
ସହି ପାରିବେଟି ଅରି !
ସାଧୁବଟି ବାଦ ଜଗତର ବାଧା
ତୋର ଶରଧା ଯିବଟି ଭାଙ୍ଗି
ବେଳହୁଁ ଭୁଲିଯା ଦଳା ହରିତାଳ
ଢଳା ଅଙ୍ଗ ଚିଳାପାଙ୍ଗୀ ।
ଚାରୁ ଚାମୀକର ବର ବରନାକୁ
କଜ୍ଜଳେ କି ଦେବୁ ବୋଳି
ଚାନ୍ଦିନୀ ନିଶାର ରଜତର ଧାର
କଳା ମେଘେ ଦେବୁ ଗୋଳି,
ଛଳ ଶ୍ଳେଷଭିର ନିଦାଘନିଶ୍ୱାସେ
ଶୁଖିଯିବ ଶିରୀଷାଙ୍ଗୀ !

ଶ୍ରୀକୃଷ୍ଣ :

ଜଗତର ବାଧା !
କ୍ଷୀଣ ବାଲିବନ୍ଧ ମାତ୍ର ଖରସ୍ରୋତା ଜାହ୍ନବୀ ମୁହାଣେ !
ଅନନ୍ତ ସାଗର ଘୋଷ ପଶେ ଯହିଁ,
ଶ୍ରବଣ ବିଦାରି !
କମ୍ପି ଉଠେ ଦିଗ ଦିଗନ୍ତର ଗଭୀର ଗର୍ଜ୍ଜନେ !
ତହିଁ ଜଗତର ବାଧା !
କ୍ଷୁଦ୍ର ଅତି ତୁଚ୍ଛ ଅତି ଜଗତର ବାଧା !
ଅନଳ ଉଲ୍ଲାସ ଯହିଁ ଆଗ୍ନେୟ ଶଇଳେ,
ଅନନ୍ତ ଆକାଶ କୋଳେ ଉଦାର ବିହାର,
ଉର୍ମିକା ନର୍ତ୍ତନେ ଉଠେ ବାଡ଼ବର ଶିଖା
ତହିଁ ଜଗତର ବାଧା ! ଘନେ ଦାମିନୀସ୍ଫୁରଣେ !
କମ କିଶଳୟ କୋଳେ ମଲ୍ଲିକା ବଦନେ
ଚାନ୍ଦିନୀ ଚୁମ୍ବନେ ଜାଗେ ଜଗତର ବାଧା !
କନକ ମଞ୍ଜରୀ ଶସ୍ୟେ ସମୀର ଆଶ୍ଳେଷେ,
ତହିଁ ଜଗତର ବାଧା !

ସଖାଦ୍ୱୟ :

ଜଗତ ଜଞ୍ଜାଳ ଯାଉ ଆରେ ବନ୍ଧୁ
ଦେ ଫିଙ୍ଗି ଦୂରେ ଦୂରେ,
ବାଜୁରେ ବାଜୁରେ ମଧୁରେ ମଧୁରେ
ମୁରଲୀ ମରମ ପୂରେ ।
ହସୁରେ ହସୁରେ ଫୁଲଯାଉ ଫୁଟି
ରସୁରେ ଅଳି ମଧୁଯାଉ ଲୁଟି
ଜଗତର ଜାଲ ମନୁଯାଉ ତୁଟି
ଜଗତଟାକୁ ତୁ, ଦେ ଫିଙ୍ଗ ଦୂରେ !
ଜଗତଟା ସେତ ଅତି ପୁରୁଣା,
ଅତି ଅରସିକ ଅତି ନିଉଣା,
ଜଗତ ବାଧାରେ ନ କରଟି ଭଣା
ଶରଧା ତୋହର ବନ୍ଧୁରେ ।
ଜଗତଟାକୁ ଦେ ଫିଙ୍ଗି ଦୂରେ ।
ଦୂରେ ! ଦୂରେ ! ଦୂରେ !

ଶ୍ରୀକୃଷ୍ଣ–

ସଖା ହେ ! ଜଗତ ଫିଙ୍ଗିବି କାହୁଁ ?
କାହିଁ ବଳ ମୋର ?
ଫିଙ୍ଗି ଦେଇଥିଲି ମାତ୍ର ଦେହ ମନ ଦୁଇ
ତା ଥିଲା ମୋ' ସାଧେ

ନିଜକୁ ପାସୋରି ପ୍ରିୟା ପାଦପଦ୍ମତଳେ !
ଆତ୍ମା ଦେବା ନ ଥିଲାଟି ଲୋଡ଼ା,
ଆଗହୁଁ ସେ ମିଶିଥିଲା ତା'ର ଆତ୍ମା ସଙ୍ଗେ
ଜନ୍ମସୀମାରେଖାଠାରୁ ବହୁଦୂରେ
ବିସ୍ମୃତି ଅତଳେ ।
କେବେ ଭିନ୍ନେ ବହିଥିଲା ଧାରା ବେନି ଜୀବନର
କେ ଜାଣେ, କେ ଜାଣେ ?
ବିଚ୍ଛେଦର ସେହି ବିଷାଦ ମୁହୂର୍ତ୍ତେ !
ମେଳାଣି ମାଗନ୍ତେ ଯହିଁ ପଡ଼ିଥିଲି ଭାଙ୍ଗି
ଆତ୍ମା ଦୁଇ ! କେ ଜାଣେ ସେ କେଉଁ ରାଇଜରେ !
ହୋଇଥିଲୁ ଛିନ୍ନ କ୍ରୂରକାଳ କରାଳ ନିୟମେ ।
ଚନ୍ଦଅଙ୍କୁ ଚନ୍ଦ୍ରିମା ଶୀତଳ !
ତଥାପି ମଙ୍ଗଳମୟ ସେ ବିଧାନ
ଉଜ୍ଜ୍ୱଳିଲା ଆଜି ଜଡ଼ପିଣ୍ଡ
ଅମୃତ ଆଲୋକେ ମମ ।
ମର୍ମ୍ମ ବୀଣାରେ ଯୋଖି ଦେଲା ଅମୃତ ରାଗିଣୀ
କୁସୁମ ଭରସେ ଦେଲା ସିଞ୍ଚି ନୀହାର କଣିକା,
ସୁବାସେ ଦିଗନ୍ତ ମୋହି ଚନ୍ଦନ ଘର୍ଷଣେ ଶୀଳାପଟେ !

**ସଖା ତୁହେଁ–**

ଜାଣୁ ଏତେ କବିତା ତୁ
ଜାଣୁ ଏତେ ରଙ୍ଗ ।
କହ ପ୍ରେମିକ ନ ଲଭେ କିପାଁ ପ୍ରେୟସୀର ସଙ୍ଗ ।
ଇନ୍ଦୁଲାଗି ଚଞ୍ଚଳିତ ସାଗର ଲହରୀ
ଅକାରଣେ ରାହୁ ମୁଖେ ପଡ଼େ ସୁଧା ଝରି,
ଦୂର ମେଘଲାଗି ନାଚେ ମୟୂରର ହିଆ,
ଅଳିର ଚୁମ୍ବନ ବିନା କୁଞ୍ଜେ ମରେ କିଆ,
ଜଳଦ ଆଦରେ ମାତ୍ର ଚାତକ ବେଦନା,
କଳାନାଗ ଶୁଣେ କେତକୀର କଦର୍ଥନା !
ମଙ୍ଗଳ ବିଧାନ ଏକି କହିବାରେ ଭୁଲେ
କର୍କଶ କଣ୍ଟକ ଯହିଁ ରାଜେ ଫୁଲେ ଫୁଲେ !
ଏତେ ପ୍ରେମ, ଏତେ ଆଶା
ତହିଁ ନିତି ଏତେ ଭଙ୍ଗ !!

(ସଖା ତିନିହେଁ ଉପବେଶନ କଲାରୁ ଶ୍ରୀକୃଷ୍ଣ ମଧୁର ମୁରଲୀ ତାନରେ ଗଗନ ପବନକୁ ମୁଖରିତ କରି ପକାଇଲେ)

କିଛି କ୍ଷଣ ମୁରଲୀ ବାଦନ ପରେ

(ନେପଥ୍ୟେ ମୁରଲୀ ତାନକୁ ଅନୁକରଣ କରି କୁଞ୍ଜମଧ୍ୟରେ)

ଶ୍ରୀମତୀ–

କିପାଁ ବାଜୁଁଗୋ ମୂରଲୀ
ମର୍ମ୍ମ ବେଦନା ବଢ଼ାଇ ?
ଅଥୟ ମନ ମୋହର,
ଆଣନ୍ତି ସୁର ଛଡ଼ାଇ !
ହୁଅନ୍ତି ମୂରଲୀ ଖଣ୍ଡ
ଲଭନ୍ତି ଅଧର ଦଣ୍ଡ
କିପାଁ ମାନବ ଜନମ ଯାତନା ପାଉଛି
ବଂଶକୁଳେ ଜନ୍ମ ନ ପାଇ ?
ଅନ୍ତରେ ମୋହର ଯେତେ ଯେତେ କଥା
ଯେତେ ସକରୁଣ ଖେଦ ଲାଜ ବ୍ୟଥା
ସ୍ୱର ତରଙ୍ଗରେ ଝରି ଝରି ପଡ଼ି
ଦିଅନ୍ତା ବିଶ୍ୱ ବୁଡ଼ାଇ !

(ଶ୍ରୀକୃଷ୍ଣ ଚତୁର୍ଦ୍ଦିଗକୁ ଚାହିଁ ରହିବା ସୁବଳ ସୁଦାମ ଉଠିପଡ଼ି ଗାଇବା)

ସୁବଳ ଓ ସୁଦାମ–

ବାଜରେ ରସରାଜ ବାଜରେ ବଂଶୀ ବାଜ !
ବ୍ରଜ କୁଞ୍ଜେ କୁଞ୍ଜେ ବାଜରେ ବଂଶୀ ବାଜ !
ସେ ମୋହନ ତାନେ
କାନନ ବିତାନେ
ପ୍ରେମଲତିକା ପ୍ରାଣେ
ଫୁଟରେ ଫୁଲ କଳି,
ଗାଉ କୋମଳେ ଅଳି,
ମଞ୍ଜୁଳ ଦଳେ ଢଳି
ଉଠୁରେ ଆନନ୍ଦ ଝଳି
ନନ୍ଦନ ଶୋଭା ସାଜ ।
ସେ ମୋହନ ସ୍ୱନେ
ଯମୁନା ଜୀବନେ
ପ୍ରୀତି କମ୍ପିତ ପଲ୍ଲବନେ ଛନ ଛନେ
ନାଚରେ ଭଙ୍ଗେ ଭଙ୍ଗେ
ନୀଳ ରତନ ରଙ୍ଗେ
ନିର୍ମ୍ମଳ ଚଳ ବୀଚି
ନାଚରେ ନାଚ ନାଚ ।
ସେ ମୋହନ ଛନ୍ଦେ କିଶୋରୀ ଗଣ୍ଡେ
ଫୁଟି ଉଠୁରେ ମଧୁରିମା ପ୍ରେମାନନ୍ଦେ
ଲାଜ ଲଳିତ ଲାଳି
ଲାଜ ପାଟଳ ସାଜ

ଲାଜର ଗୋଲାପ ଫୁଲ
ଲାଜରେ ଲାଜ ଲାଜ ! (ପ୍ରସ୍ଥାନ)
(ସଙ୍ଗୀତ)

ସଖୀମାନେ–
କିଏ ତୁ ଗାଉରେ ଗୀତ ଘନକାଳିଆ !
କିପାଁ ବଜାଉ ବଇଁଶୀ ବନମାଳିଆ !
ଯା'ରେ ଚାଲି ଯା'ରେ ଚାଲି,
ଚିତ୍ତ ତା' ଘକାନା ଜାଳି,
କାନ୍ଦେ ସେ କମଳ ମୁହାଁ
ତା' ଶ୍ୟାମ ସୁନ୍ଦରେ ଭାଳି !
ଦେନା ଦୁଃଖ ଯାରେ ଚାଲି
ଯା'ରେ ଚାଲି ଯାଆ !
ଯା'ରେ ଚାଲି, ଯା'ରେ ଚାଲି
ଯା'ରେ ଯା'ତୁ କଙ୍କାଳିଆ ।
(କରୁଣ ମିନତି ପୂର୍ଣ୍ଣ ସ୍ୱରରେ)

ଶ୍ରୀମତୀ
ସହି ! ନକର ନକର ମନା ସେତ ମୋ' ଶ୍ୟାମଧନ
ତା' ବିନା ବଜାଇବ କେ ମୂରଲୀ ଏଡ଼େ ମୋହନ !
ତାହାରି ଆଶାରେ ସହି !
ଦେହଭାର ଅଛି ବହି
ବରଷ ବରଷ ମୋର
ତା'ଲାଗି ଦୁଃଖ ଘୋର
ତାହାରି ସ୍ମୃତିରେ ମୋର
ବଞ୍ଚିଛି ଜୀବନ
ସେ ତ ମୋ' ଦିବସ ଧ୍ୟାନ
ନିଶାର ସ୍ୱପନ ।
(ଶ୍ରୀକୃଷ୍ଣ ସେହି ଲତା ଆଢୁଆଳରୁ ଧୀରେ ଧୀରେ ବୁଲିଯାଇ ଅନ୍ୟ ପାଖେ ଶ୍ରୀମତୀଙ୍କର ନିକଟବର୍ତ୍ତୀ ହେବାର ଦେଖି)

ସଖୀମାନେ– (ଏକତ୍ର ଗାଇଲେ ।)
ପୂର୍ଣ୍ଣ ଆଜି ସୁନ୍ଦର ହେ
ପୂର୍ଣ୍ଣ ଆଜି ମିଳନ !
କଣ୍ଠ ଲଭିଲା ହଜିଲା ସ୍ୱର
ରକ୍ତେ ଜାଗିଲା ସ୍ପନ୍ଦନ !
ଯାହା ଯହିଁ ଥିଲା ଦୀନ
ନିମୀଳିତ ଅତି ହୀନ
ପରଶ-ରତନେ ଲୁହା ଆଜି ସୁନା

ପାବନ ଚିର ପାବନ !
ଅଁନ୍ଧ ନୟନେ ଦର୍ଶନ ଆଜି
ଅବଶ ଅଙ୍ଗେ ଚେତନ,
ଶୈଳ କନ୍ଦରୁ ନିର୍ଝରିଣୀର
ମୁକ୍ତ ଆଜି ବନ୍ଧନ ।
(ଶ୍ରୀମତୀଙ୍କୁ ଲକ୍ଷ୍ୟ କରି)

ଶ୍ରୀକୃଷ୍ଣ–

ନୀଳ ନୀରଧିରେ
ସୁବର୍ଣ୍ଣ ତରଣୀ
ରୂପ ପସରାର ଭାସିଲା,
ନନ୍ଦନ ବନୁଁ
ମନ୍ଦାର ମାଳା
ପ୍ରୀତି ଉପବନେ ଖସିଲା ।
ଅନ୍ତର ତା'ର
ଅୟସ ଯନ୍ତରେ
ଲଳିତ ରାଗିଣୀ ବାଜିଲା
ହ୍ରଦ ମରୁବାଲି
ଅନନ୍ତ କାନ୍ତାରେ
ବସନ୍ତର ଶିରୀ ସାଜିଲା ।
ଆଖିରେ ଖେଳିଲା
ବିଧୁର ସୁଧାଂଶୁ
ଉକଟେ ବିଜୁଳି ସଞ୍ଚରି,
ମରମେ ଜାଗିଲା
ଅମିୟ ସଙ୍ଗୀତ
ଫୁଟିଲା ପ୍ରଣୟ ମଞ୍ଜରୀ ।
ଚିର ପିପାସିତ
ହିଆ ମୋର ଆଜି
ଲଭିଲା ଅମୃତ ଆସ୍ୱାଦ
ଚିର ବନ୍ଦୀ ଆଜି
କାରାଗାର କୋଣୁ
ଲଭିଲା ମୁକ୍ତିର ଆହ୍ଲାଦ ।

ଲଳିତା ଏବଂ ମଞ୍ଜୁଳା–

ପ୍ରୀତି-ବାତୁଳ କି ଏତେ ଶ୍ୟାମ ଏ ପ୍ରେମ-ମଞ୍ଜୁଳାର
ମୃଦୁଳା ଶିରୀଷ ତୁଳା ଲହୁଣୀ ପିତୁଳାର ।
ତୁମଲାଗି ପାଗଳିନୀ
କୋମଳା କୁଳ କାମିନୀ

କଲାଣି ଦିନ ଯାମିନୀ
ତୁମ ନାମ ଗଳାହାର
ତୁମେ କି ତା' ଲାଗି ସତ
ଭାବିତ ଦିନେ କହ ତ
ସାରିଛି ସେ ତା' ମହତ
ଏବେ କାନ୍ଦଣା ଯେ ସାର
ଗଞ୍ଜଣା ତା' ସାର,
ସାର ଲୁହଧାର ।
ପ୍ରୀତି ବାତୁଳ କି ନୀଳମଣି ଏ ହେମ ପ୍ରତିମାର
ଚମ୍ପା ଚହଟ ସୁଷମା ଏ ରୂପ ପୂର୍ଣ୍ଣିମାର
ନିଅ, ନିଅ ତେବେ ବନ୍ଧୁ !
କୋଳେ ଏ ଅମିୟ ଇନ୍ଦୁ
ସିନ୍ଧୁ ଉର୍ମି ଛନ୍ଦେ ନାଚୁ
କୁନ୍ଦ ଶୋଭା ଜୋଛନାର
ଦେଖ ଦେଖ ଦେଖ ଦୁହେଁ
ଏକ, ଏକ ଦୁଇ ନୁହେଁ
ଏକ ଆତ୍ମା ଦୁଇ ଦେହେ
ଚିର ଏତାର ସେ ତାର
ରବିରେ ରଶ୍ମି ହାର ।

**ଶ୍ରୀକୃଷ୍ଣ–**

ହୃଦେ ଥିଲା ମମ
ଅପୂର୍ଣ୍ଣ ବାସନା
ରାଇତରେ ସିଂହାସନ
ଶକ୍ତିମୟୀ ନିଜେ
ବିଜେ ଗଉରବେ
ଚରାଚର ବିନୋଦନ ।
ଚନ୍ଦନ ତରୁ
ମଳୟ ପରଶେ
ଗନ୍ଧେ ମୋହିଲା ମାନସ
ପ୍ରେମ ମୃଣାଳିନୀ
ବୃନ୍ତେ ଫୁଟିଲା
ସୁଧା ମକରନ୍ଦ ସାରସ ।
ହୃଦ କୁମୁଦ ମୋ'
କୌମୁଦୀ ଆଶାରେ
ସାରା ନିଶି ଥିଲା ଜାଗି
ମନ ମିଳିନ୍ଦ ମୋ'

କାନ୍ଦୁଥିଲା ନିତି
ମଧୁର ମାଧବୀ ଲାଗି ।
ଘନବନ କୁଞ୍ଜେ
ସେ ବଂଶବୀଥିରେ
ଗୋପନ ମୂରଲୀ ପ୍ରାଣ
ଦକ୍ଷିଣା ପବନ
ଚୁମ୍ବନ ମୃଦୁ
କଲା ମଧୁସ୍ୱନ ଦାନ ।
ଡାଳେ ଡାଳେ ଥିଲା
ଗହଳ ପଲ୍ଲବ
ଲୋଡ଼ୁଥିଲେ ଫୁଲ ଭୂଷା
ଅନ୍ଧକାର କୋଳେ
ତରୁଣ ତପନ
ରଙ୍ଗେ ଆଲିଙ୍ଗିଲା ଉଷା ।
ହୃଦ ଚିତ୍ରପଟ
ଝୁରୁଥିଲା ପରା
ରଞ୍ଜନ କର ତୁଳୀ,
ନବ ବାରିଦର
ଆଶାରେ ଥିଲା କି
ନିଦାଘେ ଧରା ମଉଳି

ଲବଙ୍ଗଲତା ଓ ଜାତିମାଳା–
କିଲାଗି ହେ ନବଘନ
ରସିଲ ରାଇ ମଣିରେ,
ଭୁବନ ମୋହନ ରୂପେ
ଜଗତ ପାର ଜିଣିରେ
ମେଘରେ ମୟୂର ଆଶ,
କୋଳେ ତା ବିଦ୍ୟୁବିଳାସ
ଭୁଲାଇ ପାରିବ ନିକି
କେକୀ ତା' ନାଚଠାଣିରେ ।
କାଇଁଚ ଖୋଜିବ ସୁନା
ମଣି ପବି ଯହିଁ ଚୂନା
ଜଳରେ ଆଦରି ଜଣା
ମରିବ ଜାଣି ଜାଣିରେ ।

ଶ୍ରୀକୃଷ୍ଣ–
ସେ ତ ଜୀବନର ସଞ୍ଜୀବନୀ
କି ଲାଗି ଅଯସ

ରସେ ପରଶରେ
ଚିତ୍ତେ କି ଚିହ୍ନିବ ଧନି !
ସେତ ଜୀବନେ ଜୀବନ ମନ୍ତ୍ର
ସ୍ୱର ତରଙ୍ଗର
ତରଳ ମୂର୍ଚ୍ଛନା
ପାସୋରି ପାରେ କି ଯନ୍ତ୍ର ?
ସେ ତ ଜୀବନେ ଜୀବନ ପାଶ
ଆଖିରେ ଆଲୋକ
ଅନ୍ତରେ ପୁଲକ
ତାହାର ଅମିୟ ହାସ ।
ତା' ପ୍ରେମ-କୁସୁମ କୋଳେ
ଜନମ ଜନମ
କାମନା ବାସନା
ଆକୁଳ ଆନନ୍ଦେ ଦୋଳେ ।

(ଲଳିତା ଏବଂ ବୃନ୍ଦା ଶ୍ରୀମତୀ ଶ୍ରୀକୃଷ୍ଣଙ୍କୁ ଏକାଠି ମିଶାଇ ଦେବାକୁ ନେବାବେଳେ ଉଭୟେ ଲଜ୍ଜାରେ ଛନ ଛନ ଚିତ୍ତରେ ଦୁହିଁଙ୍କୁ ଦୁହେଁ ଦେଖି ଆତ୍ମହରା ହେଉ ହେଉ ପଟପତନ ସଙ୍ଗେ ସଙ୍ଗେ ଭିନ୍ନ ଦୃଶ୍ୟରେ ଲତା କୁଞ୍ଜରେ ଦୋଳି ଉପରେ ଶ୍ରୀକୃଷ୍ଣଙ୍କ କୋଳରେ ଶ୍ରୀମତୀ)

**ସଖିଦଳ-** (ନାଚି ନାଚି)

(ପ୍ରଥମ ସଖୀ ହେମ ଥାଳିରେ ଫୁଲମାଳ, ଅର୍ଘ୍ୟ, ଚନ୍ଦନ ଧରି)

ଆଜି ଆଣହେ ମାଳତୀ କୁଞ୍ଜ ଲତିକା
ସଜ ସୁମନର ମାଳି
ଅର୍ଘ୍ୟ ଚନ୍ଦନେ ସାଜିବା ତାହାରି
ପ୍ରଣୟର ହେମ ଥାଳି ।

(୨ୟ ୩ୟ ସଖୀ ଧାନଗୁଚ୍ଛ, ଦୂବଘାସ ଘେନି)

ହେମନ୍ତ ଦେଉ ତା ଧାନର ଗୁଚ୍ଛ
ବରଷା ବା ଦୂର୍ବାଦଳ ।

(ଚତୁର୍ଥ ପଞ୍ଚମ ସଖୀ ଫୁଟନ୍ତା କମଳ ଓ ପାଣିଝରି ଧରି)

ବସନ୍ତ ଦେଉ ତା ଫୁଟନ୍ତା କମଳ
ଶରତ ତା ଶୁଭ୍ର ଜଳ ।

(୬ଷ ୭ମ ସଖୀ ଯଥାକ୍ରମେ ହସି ହସି ତାରକା ଖଚିତ ଅମ୍ବରରେ କଜ୍ଜଳକଳାର ଅମ୍ବରରେ ଭୂଷିତ ହୋଇ ପ୍ରବେଶ ଏବଂ ସେତେବେଳେ ଦର୍ଶକମାନଙ୍କୁ ଚକ୍ଷୁ ନିମିଷକେ ଅନ୍ଧକାର ରାତ୍ରର ଗଗନ ଶୋଭା, ମଲ୍ଲୀବନ, ମେଘର ଦୃଶ୍ୟ, ନଦୀ ପ୍ରକୃତି ଦେଖାଇବାକୁ ହେବ ।)

ତାରା — ଦେଉ ତାର କନକ ହାସ
ମଳୟ — ତା ମଲ୍ଲୀଗନ୍ଧ ।
ମେଘ — ଦେଉ ତା'ର କଜ୍ଜଳ ଶୋଭା

ତଟିନୀ ତା' ନୀର ଛନ୍ଦ ।

(ସବୁସଖୀ ଏକାଠି ଗାଇବା ଏବଂ ବର୍ଣ୍ଣିତ ବିଷୟ ଦୃଶ୍ୟପଟରେ ବାରମ୍ବାର ଦେଖାଯିବ-)

ଇନ୍ଦୁ ଦେଉଡା ଜ୍ୟୋତ୍ସ୍ନା ପୀୟୁଷ,
ତପନ କିରଣ ମାଳା ।
ନୀହାର ଆଶୁ ତା ମୋତି ଜ୍ୟୋତି,
ବହ୍ନି ବିରହ ଜ୍ୱାଳା ।
ବିଜୁଳି ଖେଳାଉ ତା' ଲୀଳା ଚମକ,
ବଜ୍ର ଦେଉ ତା ଡାକ ।
ସୁଷମା ରାଇଜ-ରାଣୀକୁ ରସାଇ
ଫୁଟି ଉଠ ଫୁଲଯାକ ।
ସାଗର-ତରଙ୍ଗ-ଫେନୁ ପୁଞ୍ଜେ ତା'ର
ଚରଣ ପଖାଳି ଯାଅ ।
ବନ କୁଞ୍ଜେ କୁଞ୍ଜେ ତା' ନାମେ ସଂଗୀତ
ମଧୁରେ ବିହଙ୍ଗେ ଗାଅ ।

**ପଟପତନ**

**୨ୟ ଅଙ୍କ ସମାପ୍ତ ।**

◀●▶

## ନୀରପାନ

ଆମ୍ଭ ଚିହ୍ନିଲା ଆମ୍ଭର ସାଥି
ନ ଫୁଟିଲା ମୁଖେ କଥା,
ସରିତ ଚିହ୍ନିଲା ସାଗର ତରଙ୍ଗ
ପାଦପ ଚିହ୍ନିଲା ଲତା ।
ଦୀପ ଆଲିଙ୍ଗିଲା ଅନଳ ଶିଖାଟି
ହେମ ଆଦରିଲା ହୀରା,
ରକ୍ତେ ଛୁଟିଲା ଭଷ୍ଟ ଆନନ୍ଦ
ଚମକାଇ ଶିରା ଶିରା ।

**ନୀରପାନ**

(ସ୍ଥାନ-କାଳିନ୍ଦୀ କୂଳ, ଝଙ୍କା କଦମ୍ବ ମୂଳ, ଦୂରରେ ଗିରି କାନନର ଶୋଭା-ଲଳିତାର ପ୍ରବେଶ ।

ନ ଥାନ୍ତାରେ ଯଦି
ଘନ ଅନ୍ଧକାର
କେ ବୁଝନ୍ତା
ଦିନମଣି ସନମାନ ?
ନ ଥାନ୍ତାରେ ଯଦି
ନିଦାଘର ଖରା
ଧରା କି ରସନ୍ତା
ବାରି ଝରା ତାନ ?

ବିରହ ଦହନେ
ନ ତାତିଲେ ତନୁ
ମିଳନ ମାଧୁରୀ
ପାସୋରନ୍ତା ମନୁ
ବଜର ନ ଥିଲେ
ବରଷନ୍ତା ଘନୁ
ସୁଧା ରସଧାରା
କେ କରନ୍ତା ପାନ ?

ନ ବହନ୍ତା ଯଦି
ନିରାଶାର ଲୁହ
ନ ଫାଟନ୍ତା ଛାତି
ନ ଉଠନ୍ତା କୋହ
ନ ଥିଲେ ଟି ବିଷ
କୁଳିଷ ବେଦନା
କୋମଳ ସାନ୍ତ୍ୱନା
ଚାହାନ୍ତା କି ପ୍ରାଣ ?

ପାପୀର ଅନ୍ତରେ
ପୁଣ୍ୟର ଅମୃତ
ନ ଥାନ୍ତାରେ ସତ୍ୟ
ନ ଥିଲେ ଅନୃତ
ନ ଥାନ୍ତାରେ ଧର୍ମ୍ମ
ନ ଥାନ୍ତାରେ କର୍ମ
ଭକ୍ତ ନ ଥିଲେ କି
ଥାନ୍ତେ ଭଗବାନ ?

କମଳା ଓ ମଞ୍ଜୁଳାର ପ୍ରବେଶ–

(ନାଚି ନାଚି)
ଶାନ୍ତ ସୁନ୍ଦର ଛନ୍ଦେ
ନନ୍ଦେ, ନନ୍ଦେ, ନନ୍ଦେ
ନିଖିଳ ବିଶ୍ୱ ନିବିଡ଼ ଆନନ୍ଦେ
ଚରଣ ବନ୍ଦେ ବନ୍ଦେ ।
ଶତ ଚିତ୍ତ ତରଙ୍ଗିତ ସଂଗୀତ
ଶତ ଶୁଭ୍ର ସୁମନ ସୁବାସିତ
ଶତ ସରିତ ନୀର ଅମୃତ
ବରଷେ ଶ୍ରୀପଦ ଅରବିନ୍ଦେ ।
କୋଟି କନକ ତାରାମାଳୀ
କାନ୍ତି କଳାକର ଭାସ୍କର ଥାଳୀ
ପୂଜା ଅଞ୍ଜଳି ପୟରେ ଢାଳି

ଭକ୍ତ ହୃଦ ନିଷ୍ପନ୍ଦେ ।
କାନନ ଗହନ ଗିରି ଶ୍ରେଣୀ
ନୀଳ ନୀରଧି ତରଙ୍ଗ ବେଣୀ
ନୀଳ ନୀରଦ ନୀଳ ସମ୍ପଦ
ମୁଗ୍ଧ ପରମ ଆନନ୍ଦେ ।
(ଅନ୍ତରାଳକୁ ଚାହିଁ ରହିବା ।)

**ଲବଙ୍ଗଲତା ଓ ଜାତିମାଳାର ପ୍ରବେଶ--**

(ନାଚି ନାଚି)
ଆଜି ରାଜେ ନବସାଜେ ସୁନ୍ଦର ସୁଧା ଆନନ୍ଦେ ।
ଉଜ୍ଜ୍ୱଳ ଆଜି ସୂର୍ଯ୍ୟ ଚନ୍ଦ୍ର ତାରା
ନିର୍ମଳ ଆଜି ପୁଲକିତ ଧରା
ଚଞ୍ଚଳ ଆଜି ନଦୀବନ ରାଜି
ଫୁଲ୍ଲ କୁସୁମ ସଜରଲେ ସାଜି
ବନ୍ଦେ କାହାର ପଦାରବିନ୍ଦେ ସୁଧା ଆନନ୍ଦେ ।
ଡୋଳେ କୋକିଳ ପଞ୍ଚମେ ତାନ
ଦୋଳେ ସଧୀରେ ଲତା ବିତାନ
ଗୁଞ୍ଜରେ ଅଳି ଫୁଲେ ଫୁଲେ ଚଳି
ସୁଧାକର ଧାରା ଢାଳେ କରମାଳୀ
ସଞ୍ଚରେ ସମୀର ମୃଦେ ମନ୍ଦେ ସୁଧା ଆନନ୍ଦେ ।

(ନୃତ୍ୟ ପରେ ବୃନ୍ଦାବତୀ ସହିତ ଶ୍ରୀମତୀଙ୍କର ପ୍ରବେଶ । ନେପଥ୍ୟରେ ଲଳିତା ମଧୁର ବଂଶୀବାଦନ ଶୁଣି ଶ୍ରୀମତୀଙ୍କର ଗୀତ)

**ଶ୍ରୀମତୀ--**

ଆହା ଶୁଣିଲେ ସତେକି ଗାନ
ସ୍ୱରଟି ରହିଲା ମରମରେ ଜାଗି
ଭୁଲି ଗଲି କଥାମାନ
କେଉଁ ଦୂର ବନେ ବାଜିଲା ବୀଣା
କାନେ ନ ପଶୁଣୁ ମରମ କିଣା
କେତେ ଯେ ବିଷାଦ
କେତେ ଅବସାଦ
ଶୁଣି ସେ ଲଳିତ ତାନ ।
ମୋ' ଜୀବନ କୁଞ୍ଜେ ରାଗିଣୀ ତାର
ଗଗନେ ପବନେ ଶୁଣେ ସେ ସ୍ୱର
ଭ୍ରମର ଗୁଞ୍ଜନେ
କୋକିଳ ପଞ୍ଚମେ
ତା' ସୁକଣ୍ଠ କରେ ଜ୍ଞାନ ।
ଜାଗ୍ରତେ ସ୍ୱପନେ କରମ ଧ୍ୟାନେ
ଶୁଣେ କି ତା' ସ୍ୱର ବାଜୁଛି କାନେ ।

ନୀର ଝର ଝରେ
ପତର ମର୍ମରେ
ଚମକି ଉଠେ ମୋ' ପ୍ରାଣ ।

ସଖୀଦଳ–
ଲଳନା ଲଲାମ ଲତା ଲାଜକୁଳୀ
ତୁଳନା ତୋହର ନାହିଁ
ଭାଗ୍ୟଧରା ଧରାଶିରୀ ସାର ସ୍ନେହୀ
ସାରସ ରୁଚିରା କାହିଁ ।
ଯା' ପ୍ରୀତି ତୃଷିତ ସାରା ଚରାଚର
ତୁ ପୁଣି ତାହାର ମଣି ଲୋଚନର
ନାମେ ଝୁରେ ତୋର ତା' ମଧୁ ମୁରଲୀ
ତା'ର, ଦିନ ଯାଏ ମୁଖେ ଚାହିଁ ।
ଯା' ରୂପ ମୋହନ ବିଶ୍ୱ ବିମୋହନ
ଯା' ଚରଣ ରେଣୁ ନିଖିଳ ବନ୍ଧନ
ତୁ ତା' ପ୍ରାଣକାନ୍ତା କର୍ପୂର ଚନ୍ଦନ
ତୋର ହୃଦେ, ବନ୍ଦୀ ପ୍ରାଣସାଇଁ ।
ଜଗଜ୍ଜନ ମନୋରଞ୍ଜନ ଯା' ନାମ
ସେ ତୋ' ପ୍ରାଣାରାମ ପ୍ରେମାକୁଳ ଶ୍ୟାମ
ଅମର ବାଞ୍ଛିତ ପଦ ତୋ' ସମ୍ପଦ
ସେ ପିପାସୀ ତୋହ ପାଇଁ ।

(ଶ୍ରୀମତୀଙ୍କୁ କୋମଳ ଭଙ୍ଗିରେ ବେଢ଼ିରହି ନାନା ପ୍ରକାର କୌତୁକ ଏବଂ ଦୂରରେ ଶୁଣୁଥିବା ମଧୁର ବଂଶୀ ତାନ ପ୍ରତି ଲକ୍ଷ୍ୟ)

ଲଳିତା– (ରାଧାର ଗଣ୍ଡରେ ହସ୍ତ ଦେଇ ଭଙ୍ଗିରେ)
ରାଇ ଆଉ ଶ୍ୟାମ !
ଗଗନ ଅବା ସୁଦୀନ ଥିଲା
ଲଭିଲା ନୀଳିମା କାନ୍ତି
ତପନ ଥିଲା କି ମୃଣ୍ମୟ ଖଣ୍ଡ
ଉଜ୍ଜ୍ୱଳିଲା ଦିବ୍ୟ ଭାତି ।
ଏଣିକି ଆସିଲା ଦିବସେ ଶୁଭ୍ରତା
ରଜନୀ ଲଭିଲା ନୀରବ ଶାନ୍ତି
ହିମାନୀ ଶୋଭିଲା ଧବଳତା ଗୁଣେ
ଅନଳ ଉଠିଲା ତାତି ।
ରାଇ ଆଉ ଶ୍ୟାମ ।
ବସନ୍ତର କୋଳେ ଫୁଲଭୂଷା ଅବା
ଉଷା କୋଳେ ନବ ରବି
ଶରତ ରାତିର ଶେଫାଳୀ ସୌରଭ
ନଭେ ଛାୟାପଥ ଛବି ।

ଶ୍ରୀକୃଷ୍ଣ–

(ଅନ୍ତରାଳରୁ ଗୀତ ଗାଇ ଗାଇ ପ୍ରବେଶ)

ଛନ୍ଦ ସେ ପାରେ ଜାଗିଛି ଆଜି କବିତା
ମୋର କବିତା
ଗାଇଯାଏ ପ୍ରାଣେ ସେ ନବଗୀତି ହେ ସୁନ୍ଦରି !
ମୋର ଚିତ୍ତ-ସବିତା !
ତାନେ ତାନେ ଭଲ୍ଲୁ ସୁଧା
ତାନେ ତାନେ ମୋହୁ ବସୁଧା,
ମୋହୁ ନିଖିଳ ସୃଷ୍ଟି
ସୃଷ୍ଟିର ସାର ସୁନ୍ଦରିରେ ! ତାଳ ତବ ଅମିୟ ଦୃଷ୍ଟି ।
ବାଇଯାଅ ମଧୁର ତୋ ବୀଣା
ନିମିଷେ ବିଶ୍ୱ ହେଉଟି କିଣା
ଭାଙ୍ଗୁ ଜଡ଼ତାର ମୋହ ମୋର
ନିଦ୍ରା ବେନି ନୟନର
ନବ ଛନ୍ଦର ନବ ଆନନ୍ଦେ
ପ୍ରାଣବନ୍ଧୁର ପ୍ରେମ ସମ୍ପଦେ
ପୂର୍ଣ୍ଣ ହେଉ ମୋ’ ହୃଦୟ ନିଳୟ
ହେଲେ ତୋ ଶିରୀ ସଂସାରମୟ ।

(ଏକଦିଗରେ ଶ୍ରୀକୃଷ୍ଣ, ଅପର ଦିଗରେ ସଖୀଦଳ ସହ ଶ୍ରୀମତୀ)

ଶ୍ରୀକୃଷ୍ଣଙ୍କୁ–

ବୃନ୍ଦାବତୀ

ହେ ସୁନ୍ଦର !
ସୁନ୍ଦରେ ସେ ନିବେଦିବ
କୁସିତ କିପରି କ୍ଷୁଦ୍ରହାର ପ୍ରଣୟର ।
ଦୀପ୍ତ ଶଶଧର !
ଏ ଜହ୍ନଫୁଲ ଲଭିବ କି ତବ ପ୍ରେମାଦର ?
ଆଗୋ ! ଫୁଟେ କେତେ ମଞ୍ଜୁଳା ମାଳତୀ
କେତେ ଯୁଥିକା ମଞ୍ଜରୀ,
କେତେ କୁମୁଦ କାମିନୀ,
ତବ ଆଗେ ପ୍ରିୟ, ହେ ପ୍ରାଣ ଅମିୟ
ସାନ ଏ ତ ଜହ୍ନିଫୁଲ, ଫୁଲରେ ନଗଣ୍ୟ
ହେ ବରେଣ୍ୟ ।
ଫୁଟେ ଏ ଅନନ୍ତ ପ୍ରେମେ ଦିବା ଅବସାନେ
ଶ୍ରୀଚରଣ ତଳେ ହେ ମୋହନ !
ଧ୍ୱାନ୍ତ ବିନାଶନ ସଖା ନୀଳ ଅମ୍ବରର
ହେ ସୁଧା-ଆକର !

ବିଶାଖା–

ଧୀରେ ବହେ ଗନ୍ଧବହ ମୃଦୁଳେ ଦୋଳାଇ
ପୁଷ୍ପିତା ଲତିକା ଅଙ୍ଗ ତରଙ୍ଗ- ବିଭଙ୍ଗେ
ସରମରେ ମରମରି ପତ୍ର ଅନ୍ତରାଳେ
ବାଜି ଉଠେ ଫୁଲ ପ୍ରାଣେ ମଧୁର ମୁରଲୀ
ମଳୟ ପରଶ ଭୋଳେ ବଂଶ ନିକୁଞ୍ଜରେ ।
ଯେବେ ସନ୍ଧ୍ୟାକାଳେ ବିହଙ୍ଗମେ
ବିବିଧ ପ୍ରସୂନ ପ୍ରାୟେ ଦୋଳି ଚଳନ୍ତି କୁଳାୟେ
ଅମୃତ ସଙ୍ଗୀତେ ମୋହ ନିଖିଳ ମେଦିନୀ
ବାଜିଉଠେ ଆରତୀର ଘଣ୍ଟା ଦେବାଳୟେ
ମଙ୍ଗଳେ ମଧୁରେ ।
ଯେବେ ବିଦାୟ ଲୋଡ଼ଇ ଅଳି ଶେଷ ଗୁଞ୍ଜରଣେ
ନିଃଶେଷ ଚୁମ୍ବନାଶ୍ଳେଷ ମଲ୍ଲିକାର କୁଞ୍ଜେ,
ଏକାଳେ ଦରିଦ୍ରା ସେହି କ୍ଷୁଦ୍ର ଜହ୍ନିଫୁଲ
ଜାଗି ଉଠେ ନବପ୍ରାଣେ,
ତୁମରି ନୟନ ବରଷି ପିୟୂଷ ଆଣେ
ସଜାଏ ଶଣୀର ତାର ପତ୍ର ଓଢ଼ଣାରେ
କ୍ଷୁଦ୍ର ତା' ଅଧରେ କମ୍ପି ଉଠେ ଜୀବନ ତରଙ୍ଗ,
ବକ୍ଷେ ତାର ବହିଯାଏ ଆକୁଳ ବାସନା ଯୌବନର
ପରଶେ ପ୍ରଦୋଷ ପ୍ରିୟ ତିମିର ମୋହିନୀ ।
ପ୍ରଣୟର ସେ କି ଗାଢ଼ ଅଭିବ୍ୟକ୍ତି
ସେ କି ସୃଷ୍ଟି ଆଦିକାଳୁ ପ୍ରକୃତି ପ୍ରାଣର
ଭାଷାହୀନ ନୀରବ ବେଦନା ।

କମଳା–

କିପରି ସେ ସମ୍ବୋଧନ କରିବ ହେ
ତା ହୃଦୟ ଧନେ,
କେଉଁ ନାମେ ହେ ଶଶାଙ୍କ, ହେ ଚନ୍ଦ୍ରମା ?
ଅଛି ତବ ଶତ ପ୍ରିୟ ବନ୍ଧୁ ।
କିନ୍ତୁ ତୁମେ ଏକା ତାର ଏ ଜୀବନେ ପ୍ରିୟ
ଜୀବନ ଉଦ୍ଦେଶ୍ୟ ।

ମଞ୍ଜୁଳା–

ତାର ପ୍ରଫୁଲ୍ଲତା ଆଗୋ
ତା'ର ଶୋଭା ରାଶି
ହେଉ ତବ ନେତ୍ରନିଧି, ନିତି ତା' ବାସନା ।
ତୁମରି ତର୍ପଣ ଲାଗି ବହେ ତାର
ହୃଦୟେ ଶୋଣିତ ।

ଲବଙ୍ଗଲତା–

ପ୍ରିୟେ ବୋଲି ଡାକିବାରେ ଥିଲେ ହେଁ କାମନା
କହିବ ନାହିଁ ତା ମୁଖେ କ୍ଷୁଦ୍ର ଜହ୍ନିଫୁଲ ।
ଜାଣେ ନାହିଁ ଭାଷା ପରିପାଟୀ ପ୍ରଣୟର
ଜାଣେ ନାହିଁ ମଧୁର କବିତା
ଛନ୍ଦିବ ସେ ସ୍ୱପ୍ନାବଳୀ ଛନ୍ଦେ ।
ଜାଣେ ନାହିଁ କରିବ କିପରି ବନ୍ଦୀ ହୃଦ-କାରାଗାରେ
ରଖିବ କିପରି ପ୍ରିୟତମେ ତା'ର କଠିନ ନିଗଡ଼େ
ଭୁଲାଇ ସ୍ୱରୂପେ ।

ଜାତିମାଳା–

ନୁହେଁ ସେ କେବଳ କାନ୍ତା ଚମ୍ପା ଚନ୍ଦନିନୀ
କୁନ୍ଦ କରବୀର ଶିରୀ, ମୃଦୁଳା ମାଧବୀ
ଧର ହେ ଧର ହେ ବକ୍ଷେ ପ୍ରିୟ
ଯଦି ଆକାଂକ୍ଷା ଦୁର୍ବାର ।
ଅବା ଦଳ ଅବହେଳେ ପାଦ ତଳେ
ଏତିକି ସେ ଶୁଦ୍ଧ ତବ ପ୍ରେମ ସୁନିର୍ମଳ
ତବ ଶ୍ରୀଚରଣ ତାର
ଜୀବନ ସମ୍ବଳ ।

(ସଖୀଦଳ ଶ୍ରୀମତୀଙ୍କୁ ଧରି ଶ୍ରୀକୃଷ୍ଣଙ୍କୁ ଦେଖାଇ)

(ଗୀତ)

ଦିଅ ଦିଅ ଚରଣେ ସ୍ଥାନ ଜହ୍ନିଫୁଲଟିକି ।
ତୁମ୍ଭେ ଜ୍ଞାନ, ତୁମ୍ଭେ ଧ୍ୟାନ
ତୁମ୍ଭେ ଜୀବନ ଦେଇଛି ବିକି ।
କୌମୁଦୀ ବିନା ଫୁଟିବ କୁମୁଦ
ଚାନ୍ଦିନୀ ବିନା ହସିବ କୁନ୍ଦ
ସୁରଭି ଶେଫାଳୀ ରଜନୀଗନ୍ଧା
ସେ ତ ପ୍ରେମେ ବେଳେ ନିଶାରାଣୀକି ।
ତୁମ୍ଭ ନାମ ବହେ ଅଙ୍ଗେ ଅଙ୍ଗେ,
ତୁମ୍ଭ ମିଶିଛି ତା ପରାଣ ସଙ୍ଗେ,
ମରମେ ମରମେ ପ୍ରେମ ତରଙ୍ଗ
ରଙ୍ଗାଏ କନକ କାନ୍ତିକି ।

ଶ୍ରୀକୃଷ୍ଣ–

(ସଙ୍ଗୀତ)

ମୋ ମାନସ ତିଳୋତ୍ତମା
ଜନମେ ଜନମେ ଖୋଜି ବୁଲିଥିଲି
ଏଇ ମମ ପ୍ରାଣରମା
ମୁଁ ଶ୍ୟାମଘାସ ସେ ସୁଷମାଫୁଲ

ରୌଦ୍ର ଦହନେ ଛାୟା ଅତୁଳ
ମୃତ ଜୀବନେ ମୋ ସଞ୍ଜୀବନୀ ଧାରା
ପରାଣର ପ୍ରିୟତମା ।

(ଏହି ଦିଗରେ ଶ୍ରୀମତୀ ଅପର ଦିଗରେ ଶ୍ରୀକୃଷ୍ଣ । ଗୀତ ପଦକୁ ପଦ ଗାଇ ସଖିମାନେ ଗୋଟିଏ ଲେଖାଏଁ ଫୁଲମାଳ ଦେଇଯିବେ ।)

ଶ୍ରୀମତୀ–

କୋଟି ଯୁଗ ଅବା ଅନାଇଥିଲି ମୁଁ
ତିଳେ ଦରଶନ ଆଶେ
ପ୍ରତି ଅଙ୍ଗ ମୋର ଧନ୍ୟ ହୋଇଲା
ଅଧର ମଧୁର ହାସେ ।

(ସଖୀ ଶ୍ରୀମତୀଙ୍କୁ ଫୁଲମାଳ ଦେଲାରୁ ସେ ତାହା ଶ୍ରୀକୃଷ୍ଣଙ୍କ ଗଳାରେ ଲମ୍ବାଇ ଦେଲେ)

ଶ୍ରୀକୃଷ୍ଣ–

ଅନ୍ତରେ ମୋର ରଚିଥିଲି ଏକ
ମାୟାର ମୋହନ କୁଞ୍ଜ
ଗାଇଥିଲା ପିକ ତହିଁ ତରୁଡାଳେ
ଫୁଟିଥିଲା ଫୁଲ ପୁଞ୍ଜ ।

(ସଖୀର ଶ୍ରୀକୃଷ୍ଣଙ୍କୁ ଫୁଲମାଳ ଦେଲାରୁ ସେ ତାହା ଶ୍ରୀମତୀଙ୍କ ଗଳାରେ ଲମ୍ବାଇ ଦେଲେ ।)

ଶ୍ରୀମତୀ–

ସଞ୍ଜ ଗୋଧୂଳି ଭେଟିଥିଲା ତାର
ଗଗନେ ତୃଷ୍ଣ ମେଘେ
ସ୍ୱଚ୍ଛ ଝରଣା ବହିଥିଲା ତାର
ଶିଳା ଦେହେ ପ୍ରେମାବେଗେ ।

(ସଖୀର ପୂର୍ବବତ୍ ଶ୍ରୀମତୀଙ୍କୁ ଫୁଲମାଳା ଇତ୍ୟାଦି ଦାନ)

ଶ୍ରୀମତୀ–

ବାକି ଥିଲା ଖାଲି ପ୍ରେମର ପ୍ରତିମା
ମନୋରାଇଜର ରାଣୀ
ବାକି ଥିଲା ଖାଲି ଗଜଗାମିନୀର
କଳିତ ଲଳିତ ଠାଣି ।

(ସଖୀର ପୂର୍ବବତ୍ ଶ୍ରୀକୃଷ୍ଣଙ୍କୁ ଫୁଲମାଳ ଇତ୍ୟାଦି ଦାନ)

ଶ୍ରୀମତୀ–

ବାକି ଥିଲା ଖାଲି ହୃଦୟ–ମନ୍ଦିରେ
ଦେବତାର ପ୍ରେମାସନ
ଜାଗର ଜାଳି ମୁଁ ବସିଥିଲି ନିତି
ଧାୟି ଶ୍ରୀରୂପ ରତନ ।

ଶ୍ରୀକୃଷ୍ଣ–

ପଛପଟେ ଆସି ଠିଆ ହେଲା କିଏ
ମୁଦିଲା ନୟନ କରେ

ଥରି ଉଠିଲା କି ମରମେ ବାସନା
ରୋମାଞ୍ଚିତ ପୁଲକରେ ।

ଶ୍ରୀମତୀ–

ହୃଦସିନ୍ଧୁତୀରେ ଅନୁରାଗ ବୀଚି
ନାଚି ନାଚି ଗଲା ବହି
ନୟନେ ମିଶିଲା ନୟନ ପରାଣେ
କାମନା ଦେଲା କି ଦହି ।

ଶ୍ରୀକୃଷ୍ଣ–

ଆତ୍ମା ଚିହ୍ନିଲା ଆତ୍ମାର ସାଥୀ
ନ ଫୁଟିଲା ମୁଖେ କଥା,
ସରିତ ଚିହ୍ନିଲା ସାଗର ତରଙ୍ଗ
ପାଦପ ଚିହ୍ନିଲା ଲତା !

ଶ୍ରୀମତୀ–

ଦୀପ ଆଲିଙ୍ଗିଲା ଅନଳ ଶିଖାଟି
ହେମ ଆଦରିଲା ହୀରା
ରକ୍ତେ ଛୁଟିଲା ଜଷ୍ଟ ଆନନ୍ଦ
ଚମକାଇ ଶିରା ଶିରା ।

ଶ୍ରୀକୃଷ୍ଣ–

ଲାବଣ୍ୟସିନ୍ଧୁ-ଊର୍ମ୍ମି ଚୁମ୍ବିଲା
ଇନ୍ଦୁର ସୁଧା ଅଧର
ବିଶ୍ୱେ ବାଜିଲା ବଂଶୀସ୍ୱରେ
ମର୍ମ୍ମର ଗୀତ ଲହର ।

(ଫୁଲ ମାଳା ଦେଲା ପରେ ସଖିମାନେ ଅନ୍ତରାଳକୁ ଚାଲିଯିବା)
(ସଙ୍ଗୀତ)

ଶ୍ରୀମତୀ–

ଆଜି ମୋ' ହୃଦୟେ ତବ ଆସନ ହେ ସୁନ୍ଦର ।
ବିକଶିତ ହୃଦ କୁମୁଦ ଉଲ୍ଲସିତ ଅନ୍ତର ।
ଆଲୋକ ଉସ ଆଖିରେ ଫୁଟେ
ପୁଲକ ତରଙ୍ଗ ଅଙ୍ଗେ ଛୁଟେ
ବିଶ୍ୱେ ବହେ ଆନନ୍ଦ-ଧାରା ଶତ ସରିତ ନିର୍ଝର ।
କୁସୁମେ କୁସୁମେ ନବ ଛବି
ନବ କିରଣେ ଦିପ୍ତ ରବି
ଜଳେ, ନୀଳାକାଶେ ମଙ୍ଗଳ-ଦୀପ ଶଶୀତାରା ଦଳେ ଭାସ୍ୱର ।
ପ୍ରେମ-ସଙ୍ଗୀତ ଗାଏ ବିହଙ୍ଗ
ପ୍ରେମେ ନାଚେ ସିନ୍ଧୁ-ତରଙ୍ଗ
ଲତିକା – ~~କୁଞ୍ଜେ ଭଙ୍ଗ~~ ମଳୟ ସ୍ପର୍ଶେ ମନ୍ଦ ମର୍ମ୍ମର ।

ଶ୍ରୀକୃଷ୍ଣ–

ଏଇ ଥିଲା ମୋର ମର୍ମେ ବାସନା
ଏଇ ଥିଲା ମୋର ଆଶା
ଫିଟିଯିବ ମମ ଅବଶ ରସନା
ବେଦନା ଲଭିବ ଭାଷା ।
ନିଶାର ନିହାର ରବି କିରଣରେ
ଲଭିବ ମୁକୁତା ଦ୍ୟୋତି
ଦରଫୁଟା ପଦ୍ମ ଗୋଲାପ ଅଧରେ
ଫୁଟିବ ଜୀବନ ଜ୍ୟୋତି ।

ଶ୍ରୀମତୀ–

ଗୁପ୍ତ ଚିତ୍ତେ ମୋର ମନମୋହନ
ଲୁପ୍ତ ନିର୍ଝର ଗୋଟି
ଦେଖିଲା କେବେ ସେ ସିନ୍ଧୁ ସପନ
ଶିଳା ତଳେ ଗଲା ଲୋଟି ।
ବାଧା ନ ମାନି ସେ ଧାଇଁଲା
ଫେରି ପଛକୁ ନ ଚାହିଁଲା ।
ଗୁପ୍ତ ହୃଦେ ମୋର ମନମୋହନ
ସୁପ୍ତ ବାସନା ଫୁଲ
ଦେଖିଲା କେବେ ସେ ଇନ୍ଦୁ ସପନ
ଫୁଟିଲା କି ପ୍ରେମାକୁଳ
ଆପେ ଦେଲା ବକ୍ଷପାତି
ଅଙ୍କେ ତାହାର ଶୋଭିଲା ଆଦରେ
ଜୋଛନାର ମଧୁରାତି ।

ଶ୍ରୀକୃଷ୍ଣ–

(ନିକଟକୁ ଆସି ଶ୍ରୀମତୀଙ୍କ କୋମଳ ଗଣ୍ଡରେ ହସ୍ତ ଦେଇ ଦେଇ)
ତୁ କିଏ ସେ ମୁଁ କିଏ ସେ
କିମ୍ବା ବନ୍ଧା ପରସ୍ପର
ତୁ କିଏ ସେ ମୁଁ କିଏ ସେ
ସମ୍ବନ୍ଧ ନିକଟତର
ତୁ କିଏ ସେ ମୁଁ କିଏ ସେ
ସ୍ଥାପିଲା ଆମରି ତୁଲେ
ଏ ପ୍ରେମ, ଅପୂର୍ବ ପ୍ରେମ
ସେ କେଉଁ ଶକତି ଭୁଲେ ।
ତୁ କିଏ ସେ ମୁଁ କିଏ ସେ
ଜାଣିନାହୁଁ ସତ ବନ୍ଧୁ ।
ତଥାପି ହେ ପରସ୍ପର
ଯୁକ୍ତ ଯଥା ନଦୀ ସିନ୍ଧୁ !

ତୁ କିଏ ସେ ମୁଁ କିଏ ସେ
ତୁ ମୋହର ମୁଁ ତୋହର
ଏହି ଜ୍ଞାନେ ଶାନ୍ତି ଲଭି
ଯୁକ୍ତ ପ୍ରାଣ ପରସ୍ପର ।

(ମୋହାବିଷ୍ଟ ବାହ୍ୟଜ୍ଞାନଶୂନ୍ୟ ହୋଇ ପରସ୍ପରକୁ କେବଳ ନିର୍ନିମେଷରେ ଚାହିଁ ସ୍ଥିର ଅବସ୍ଥାନ)

ସଖିଦଳ ଅନ୍ତରାଳରେ ରହି–

ସଖି ! ଆସରେ ସଖି ! ଆସରେ
ପୂଜିବା ଆଜି ଶ୍ୟାମସୁନ୍ଦରେ ।
ରାଇ ପାଶେ ଶ୍ୟାମ ଯୁଗଳ ଶୋଭା
ଶାଶ୍ୱତ ବିଶ୍ୱ ମାନସ ଲୋଭା
ଚିର ତରୁଣର ଚିର ତରୁଣୀ
ତରୁତାଳେ ଫୁଲଗଭା ।
ସଖି ! ଆସରେ ସଖି ! ଆସରେ
ସାଜିବା ମୋହନ ବେଶରେ
ରାଇ ପାଶେ ଶ୍ୟାମ ଯୁଗଳ ଶୋଭା
ଶାଶ୍ୱତ ବିଶ୍ୱ ମାନସ ଲୋଭା
ଚିର ମୋହନର ଚିର–ମୋହିନୀ
ମାଧୁରୀ ଇନ୍ଦୁ ହାସରେ
ସଖି ! ଆସରେ ।

(ସଖୀମାନେ ଶ୍ରୀମତୀ ଶ୍ରୀକୃଷ୍ଣଙ୍କୁ ଫୁଲରେ ବନ୍ଧନ କରୁକରୁ)

ପ୍ରଥମ ଦଳ–

ତୋଳ ତୋଳ ଫୁଲ ମାଳ
ଜାଳ ମଙ୍ଗଳ ଦୀପ
ସାଜ ସାଜ ହେମ ଥାଳୀ
ଗୁଛି–ପ୍ରେମ ନୀପ ।

ଦ୍ୱିତୀୟ ଦଳ–

କାଳିନ୍ଦ ! ଦେ' ତୋ' କମଳ ହାର
କାନନ ! ଦେ' ତୋ' କୁସୁମ ସାର
କୁରଙ୍ଗ ! ଦେ' ତୋ' କସ୍ତୁରିକା
ଚନ୍ଦନ ! ଦେ' ତୋ' ଗନ୍ଧଭାର ।

ସମସ୍ତେ–

ଆଜି ପ୍ରେମ–ରାଇଜର ରାଜା ପାଶେ
ପ୍ରେମ ରାଇଜର ରାଣୀ
ନିଖିଳ ବିଶ୍ୱ ଉଚ୍ଚାର ଆଜି
ମିଳନ ମଙ୍ଗଳ ବାଣୀ ।
ବରଷ କଲ୍ୟାଣ ରାଶି
ଯାଅ ହେ ଆଶୀଷ ଭାଷି·

ପିଅ ପ୍ରେମାମୃତ, ପ୍ରାଣ ହର୍ଷେ ଗାଅ
ପ୍ରେମଜୟ ସର୍ବପ୍ରାଣୀ ।
ପ୍ରେମର ଜୟ, ମରଣ ଲୟ
ଉଠୁ ପ୍ରେମ ଗୀତି ବିଶ୍ବମୟ ।

(ହଠାତ୍ ଶ୍ରୀକୃଷ୍ଣଙ୍କର ପ୍ରେମମୟ ସ୍ୱରୂପ । ଭାବରେ ଅଭିଭୂତା ଶ୍ରୀମତୀ ନତଜାନୁ ଏବଂ ନିବେଦନ ଯୁକ୍ତ କରରେ ଆରାଧନା ନିରତ)

ଶ୍ରୀମତୀ ଓ ସଖିମାନେ–

ଯାଉ ମୋ ଜୀବନ ହରି ତୁମରି ଧିଆନରେ
ଆନେ ନ ଚାହେଁ ଜୀବନେ ଜ୍ଞାନେ ବା ଅଜ୍ଞାନରେ
ତବ ନାମ ଗୁଣଗାନ ହେଉ ମୋ' ସଙ୍ଗାଳି
ତବ ନାମ ବିନା ମୁହିଁ ଦରିଦ୍ର କଙ୍ଗାଳି
ତବ ନାମ ହୃଦ୍‌ଦ୍ୱାର ନିତି ଜପାମାଳି ହେ ।
ଘେନି ନାମ ଛାପ, ଭ୍ରମିବି ଜଗତେ (ମୁହିଁ)
ତରି ଯିବି ଭବ ଧାମ ନାମ ଭଜନରେ ।
ହରି ହରି କହି ମୋର ଜୀବନ ସାରିବି ହେ
ନାମ ତୁଣ୍ଡେ ଅନ୍ତେ ମୁଁ ମରିବି ହେ
ହରି ମୋ ଚିତ୍ତର ବିତ୍ତ,
ହରି ମୋ ପ୍ରାଣ ଦୟିତ
ହରି ମୋ ପରାଣମିତ,
ସାର ମୋ ଜୀବନରେ ।

ତୃତୀୟ ଅଙ୍କ ସମାପ୍ତ

କଟକ
ତା।୨୪–୦୩–୧୯୨୮

କୁନ୍ତଳା କୁମାରୀ ସାବତ

## ପରିଶିଷ୍ଟ-୨

# ମହାକାଳର ପଦପ୍ରାନ୍ତରେ ଗୋଟିଏ ଶୂନ୍ୟ ଅଂଜଳି

ଡଃ. କୁଞ୍ଜ ବିହାରୀ ଦାସ ଲେଖିଛନ୍ତି, "ଅଞ୍ଜଳି ଭଗବାନଙ୍କ ଚରଣରେ ସଂଗୀତ-କବିତାର, ଶ୍ରଦ୍ଧାପ୍ରୀତିର ଏକ ଅଞ୍ଜଳି । କାହିଁରେ ଦାର୍ଶନିକ ଜିଜ୍ଞାସା, କାହିଁରେ ସେବାର ପିପାସା, କାହିଁରେ ଦର୍ଶନର ଅଭିଳାଷ ପ୍ରକାଶ ପାଇଛି । କେତେବେଳେ ସେ ଭଗବାନଙ୍କ କରୁଣା ଭିକ୍ଷା କରିଛନ୍ତି, ଅବସାଦରେ ବା ବିଷାଦରେ କେତେବେଳେ ତାଙ୍କୁ ବ୍ୟାକୁଳ ଭାବରେ ଡାକିଛନ୍ତି ।" (କୁନ୍ତଳା କୁମାରୀ ଗ୍ରନ୍ଥମାଳା ପ୍ରଥମ-ପୃ:୧୨)

କୁନ୍ତଳା କୁମାରୀ 'ଅଞ୍ଜଳି' ପ୍ରକାଶ କରନ୍ତି ୧୯୨୩ ମସିହାରେ । ଦର୍ପଣୀ ରାଣୀଙ୍କର ଆର୍ଥିକ ସହାୟତାରେ ଏହା ୧୯୨୨ ମସିହାରେ ପ୍ରେସକୁ ଯାଏ ଏବଂ ୧୯୨୩ ମସିହାର ପ୍ରଥମ ଭାଗରେ ଆତ୍ମ ପ୍ରକାଶ କରେ । ଏଥିରେ ପଞ୍ଚାଶାଧିକ କବିତା ପ୍ରକାଶ ପାଇଛି ଏବଂ ଏଗୁଡ଼ିକ ୧୯୨୦ରୁ ୧୯୨୨ ମଧ୍ୟରେ ରଚିତ ହୋଇଥିବାର ସମ୍ଭାବନା । କୁନ୍ତଳାକୁମାରୀ ଉଚ୍ଚଶ୍ରେଣୀର କବି ଏହି କାରଣରୁ ଯେ ଦୁର୍ଲ୍ଲଭ କବିତ୍ୱ ସହିତ ଦାର୍ଶନିକତାର ଏକ କଳାତ୍ମକ ସମନ୍ୱୟରେ ଯେଉଁ କାବ୍ୟଶୈଳୀ ସେ ପ୍ରସ୍ତୁତ କରିଥିଲେ, ଓଡ଼ିଆ କାବ୍ୟ ସାହିତ୍ୟରେ ତାହା ଏକ ଅଭିନବ ପରମ୍ପରା ସୃଷ୍ଟି କରିଥିଲା କହିଲେ ଚଳେ । 'ଅଞ୍ଜଳି'ର କବିତାଗୁଡ଼ିକର ଅନ୍ତରାଳରେ ଏକ ନିଃସଙ୍ଗ, ଅସହାୟ, ଦୁର୍ବଳ ମଣିଷର କରୁଣ ନିବେଦନ, ଅନ୍ତଃସ୍ରୋତ ଭଳି ସମଗ୍ର ପୃଷ୍ଠଭୂମିକୁ ପ୍ଲାବିତ କରି ବହି ଚାଲିଛି । ଏହି କାରୁଣ୍ୟ ମର୍ମରିତ ଗାଥାର ପ୍ରକୃତ ଲକ୍ଷ୍ୟ କିଏ, ଏ ବିଷୟରେ ମନରେ ସ୍ୱତଃ ପ୍ରଶ୍ନ ଜାଗ୍ରତ ହୁଏ । ଡଃ. ଦାଶ ଏହାକୁ 'ଭଗବାନଙ୍କ ଚରଣରେ ସଂଗୀତ-କବିତାର, ଶ୍ରଦ୍ଧାପ୍ରୀତିର ଏକ ଅଞ୍ଜଳି' ବୋଲି ଅବଶ୍ୟ କହିଛନ୍ତି । ମାତ୍ର ପାଠକ ଯେତେବେଳେ ପଢ଼ିଯାଏ-

"ବିଚିତ୍ର ସୁନ୍ଦର ବଦନ ତୁମ୍ଭର
କହ କିମ୍ପା ଦେଖାଯାଏ ନା,
ରଖିନି ହେ ବନ୍ଧୋ ପରାଣେ ପରାଣେ
ସେହିତ ସତତ ବାସନା-"

କିମ୍ବା-

"ସେ କି ବୁଝେ ମୋର ଅନ୍ତର ବେଦନା
ସେ କି ବୁଝେ ମୋର ବ୍ୟଥା ?
ସେ କି ବୁଝେ ମୋର ତପ୍ତ ଅଶ୍ରୁଧାର
ସେ କି ବୁଝେ ମୋର କଥା ?"

କିମ୍ବା

ଆଖିତ ନ ଦେଖେ ସାକ୍ଷୀତ ନ ଥାଏ,
ନ ବୁଝେ ଅନ୍ତର ଆନ,
ଲୁଚା ଚୋରା ମୋର ସେହି ଲୁହଟିକ
ତୋ ଚରଣେ ଲଭେ ସ୍ଥାନ ।''

ସେତେବେଳେ, ସେ ଏହି ସବୁ ରଚନା ପଛରେ ଅପାର୍ଥିବ, ଦିବ୍ୟ କୌଣସି ରକ୍ତମାଂସହୀନ ସତ୍ତାର ଉପସ୍ଥିତି ଅପେକ୍ଷା ଏକ ସାକାର ଶରୀରଧାରୀ ବ୍ୟକ୍ତିକୁ ଅଧିକ ସ୍ପଷ୍ଟ ଭାବରେ ଦେଖିପାରେ ।

ଡାକ୍ତର କୈଳାସ ରାଓଙ୍କ ସହିତ କୁନ୍ତଳାକୁମାରୀଙ୍କର ପରିଚୟ ଏତେବେଳକୁ ଘନିଷ୍ଠତାରେ ପରିଣତ ହୋଇ ସାରିଥିଲା । କୁହାଯାଉଛି ଯେ, ବ୍ୟକ୍ତିଗତ ଜୀବନରେ କୁନ୍ତଳା ଡାକ୍ତର ରାଓଙ୍କଠାରୁ ଯେଉଁ ସହାୟତା ଲାଭ କରିଥିଲେ, ସେଥିପାଇଁ ସେ ପ୍ରଥମେ ତାଙ୍କ ପ୍ରତି କୃତଜ୍ଞ ହୋଇ ପଡ଼ିଥିଲେ । ପରବର୍ତ୍ତୀ କାଳରେ ଏହା ହିଁ ପ୍ରଣୟରେ ପରିଣତ ହେଲା ।

ଡାକ୍ତର ରାଓ ବୟସରେ କୁନ୍ତଳାଙ୍କଠାରୁ ଯଥେଷ୍ଟ ବଡ଼ ଥିଲେ ଏବଂ କୁନ୍ତଳାଙ୍କ ସହ ପରିଚିତ ହେଲା ବେଳକୁ ପ୍ରାୟ ପ୍ରୌଢ଼ତ୍ୱକୁ ସ୍ପର୍ଶ କରୁଥିଲେ । ସେ ପୁଣି ବିବାହିତ ଓ ସନ୍ତାନର ଜନକ ମଧ୍ୟ ହୋଇ ସାରିଥିଲେ । ତେଣୁ ନବାନୁରାଗର ରୋମାଞ୍ଚକର ତରଳତା କୁନ୍ତଳାଙ୍କୁ ଯେଉଁଭଳି ଅସ୍ଥିର କରୁଥିଲା, ଅଭିଜ୍ଞ କୈଳାସଙ୍କଠାରୁ ତା'ର କୌଣସି ପ୍ରତିକ୍ରିୟା ପ୍ରକାଶ ପାଉ ନ ଥିଲା । ନବୀନ ପ୍ରେମିକା ଯେତେବେଳେ ଆଦର୍ଶର ଚରମ ସୀମାରେ ଉପନୀତ ହୋଇ ଚିନ୍ତା କରୁଥିଲେ-

''ଅକ୍ଷିତ ନିର୍ମାଖୀ ବୁଲିବି ସଂସାରେ,
ଭିକାରୁଣୀ ବେଶେ ଦୁଆରେ ଦୁଆରେ,
ଭଙ୍ଗ କେନ୍ଦରାରେ ଗାଇବି ତା' ନାମ,
ପ୍ରାଣାରାମ ପ୍ରିୟ ଚିର ପ୍ରାଣାରାମ-'' (ପ୍ରେମ ଚିନ୍ତାମଣି)

ଠିକ୍ ସେତିକିବେଳେ ହୁଏତ ଉଲ୍ଲାସକୁ ସଂଯମର ରଜ୍ଜୁରେ ବାନ୍ଧି ରଖିବାକୁ ତାଙ୍କୁ ଉପଦେଶ ଦିଆଯାଉଥିଲା । ନିଜକୁ ସମ୍ପୂର୍ଣ୍ଣ ରୂପେ ପ୍ରିୟତମର ପଦପ୍ରାନ୍ତରେ ଉଜାଡ଼ି ଦେଇ କବିମନ ଚିନ୍ତା କରୁଥିଲା-

''ସବୁ ନେଇ ଶୂନ୍ୟ କରିଅଛ ମୋତେ
ପୂରାଅ ସକଳ ଦେଇଣ,
ନେଲ ମୋତେ ହରି ନେଲ ମୋତେ ଧରି
ଜୀବନେ ବଞ୍ଚାଇ ମାରିଣ ।'' (ଅଭିଯୋଗ)

ରିକ୍ତତା ମଧ୍ୟରେ ପୂର୍ଣ୍ଣତାର ଆନନ୍ଦ ପାଇବା ନିମନ୍ତେ ମୁଗ୍ଧ କବିଚିତ୍ତ ଯେତେବେଳେ ବିଭୋର ହୋଇ ଅଗ୍ରସର ହୋଇଯାଉଥିଲା, ସେତେବେଳେ ତାଙ୍କୁ ସଂଯମର ଲକ୍ଷ୍ମଣ ଗାର ଦେଖାଇ ଦିଆଯାଉଥିଲା । ମନର ଆବେଗକୁ କବିତାରେ ପ୍ରକାଶ କରି କବି ତେଣୁ ଲେଖୁଥିଲେ-

'ଦଣ୍ଡେ ଦଣ୍ଡେ ମୋତେ ରଖୁଛ ଭୁଲାଇ
ଅସାର ସଂସାର ଦେଖାଇ,
ସବୁ ଛାଡ଼ି ମୁଁ ତ କାନ୍ଦି କାନ୍ଦି ତୁମ
ପଛରେ ଯାଉଛି ପଳାଇ ।'' (ଛଳନା)

ନିଷ୍ଠୁର ସମାଲୋଚନା ଏବଂ ଶୁଷ୍କ ଉପଦେଶ ମଧ୍ୟରେ କୋମଳ କବିପ୍ରାଣ ଯେ କିଭଳି ବ୍ୟାକୁଳ

ହୋଇ ପଡୁଥିଲା, ତାହାର ସ୍ୱାକ୍ଷର 'ଅଞ୍ଜଳି'ର କବିତାଗୁଡ଼ିକରେ ଦେଖିବାକୁ ମିଳିବ । ତାଙ୍କ ବିରୁଦ୍ଧରେ ସକଳ ଅଭିଯୋଗ ସଂପର୍କରେ କବିଙ୍କର ସରଳ ବକ୍ତବ୍ୟ–

"କେତେ ଦୋଷ ଧରି କରୁଛ ବିଚାର
ଦୁର୍ବଳତା ଜାଣି ସକଳ,
ତୁମରି ଇଚ୍ଛାରେ ହୋଇଛି ଅଧମ
ତୁମରି ଇଚ୍ଛାରେ ବିକଳ ।"
(କେତେ ଦୋଷ ଧରି)

ପ୍ରୌଢ଼ ପ୍ରେମିକ ନିଜର ସାମାଜିକ ପ୍ରତିଷ୍ଠାକୁ ସ୍ମରଣ କରି ତରୁଣୀ ପ୍ରେମିକା ନିମନ୍ତେ ଆଚାର ଆଚରଣର ଯେଉଁ ନିର୍ଦ୍ଦେଶ ଦେଉଥିଲେ, ସଦାବେଳେ ତାକୁ ମାନି ଚଳିବା ସମ୍ଭବପର ହେଉ ନ ଥିଲା । ତେଣୁ କବି ମନେ କରୁଥିଲେ–

"କେତେ କହୁଥାଅ ରହିବି ନୀରବେ
ତୁମେ ଯଦି କଥା କହିବ,
କେତେ ଆକୁଳତା ରୋଧିବି ହୃଦରେ
ତୁମେ ଯଦି ଗୀତ ଗାଇବ ?" (କେତେ କହୁଥାଅ)

ପାଟିର କଥା ନୀରବ ହୋଇଗଲେ ଯେ ପ୍ରେମ ଅପ୍ରକଟ ହୋଇ ରହିବ, ଏହା ସତ୍ୟ ନୁହେଁ । ସାଂସାରିକ ଦେଣା ପାଉଣାର ମାପଚୁପ ମଧ୍ୟରେ ସେ ଆପେ ଆପେ ମୁଖର ହୋଇଉଠେ । ଏହା ହିଁ ସାଧାରଣ ମଣିଷ ଚକ୍ଷୁରେ ଅଶ୍ଳୀଳ ହୋଇଉଠେ । ତେଣୁ ସେ ପ୍ରେମିକ/ପ୍ରେମିକାକୁ ଭୟ ଦେଖାଇବାକୁ ଆରମ୍ଭ କରେ । ମାତ୍ର ମନ ଯଦି ଦୃଢ଼ପ୍ରତିଜ୍ଞ, ପୟଃ ଯଦି ପୁଣି ନିମ୍ନାଭିମୁଖୀ, ତା'ର ସ୍ୱଚ୍ଛନ୍ଦ ଗତି ରୋଧିବା କ'ଣ ଏଡ଼େ ସହଜ ? ଆରମ୍ଭ ହୁଏ ତେଣୁ ପ୍ରତିବାଦ–

"ଭୟ କିପାଁ ଏତେ ଦେଖାଉଛ ମୋତେ
ଆକୁଆଳେ ମୁଖ ଲୁଚାଇ,
ବାଟ ଜାକୁଆଳ ଭବକାନ୍ତାରେ ଗୋ
ରହୁଛ କିପାଇଁ ପଛାଇ ?" (କୂଟନୀତି)

ପୂର୍ଣ୍ଣ ସମର୍ପଣର ଭଙ୍ଗୀରେ ପ୍ରେମିକା ନିଜକୁ ଅର୍ପଣ କରି ଦେଇ ଭାବେ, ହାତ ଧରି ବାଟ କଢ଼ାଇ ନେବା ଯାହାର କର୍ତ୍ତବ୍ୟ, ସେ ଯଦି ଏକାକୀ ଛାଡ଼ିଯାଏ ଓ ଦୂରରୁ 'ଅବାଟରେ ଗଲା' 'ଅବାଟରେ ଗଲା' ବୋଲି ଚିତ୍କାର କରେ, ଯା'ଠୁ ବିଡ଼ମ୍ବନା ଆଉ କ'ଣ ଅଛି ?

ଟିକିଏ ନିବିଡ଼ ସାନିଧ ଆଉ ଅନ୍ତରଙ୍ଗତା କାମନାରେ କବିଚିତ୍ତ ଯେ କେତେ ବ୍ୟାକୁଳ ଏବଂ ବ୍ୟଗ୍ର ତାହା ପ୍ରକାଶ ପାଇଛି "ପାଖରେ ବସିତ କାହିଁଛି ବିରସେ, ପାଖକୁ ନିଅ ମୁଁ କହୁଛି/ପାଖରେ ଥାଇ ମୁଁ ଦେଖିପାରୁ ନାହିଁ, ଅକାରଣେ ଦୁଃଖ ସହୁଛି" (ପାଖରେ) ପ୍ରଭୃତି ପଙ୍‌କ୍ତିରେ । ପେଶାରେ ଚିକିତ୍ସିକା ହେଲେ ମଧ୍ୟ କୁନ୍ତଳାଙ୍କର ମନ ତଳେ ରହିଗଲା, ଏକ ଶାଶ୍ୱତ ଭାରତୀୟ ନାରୀଆତ୍ମା ଯାହା ତାଙ୍କୁ ଏକ ସ୍ୱାଭାବିକ ଗାର୍ହସ୍ଥ୍ୟ ଜୀବନ ନିମନ୍ତେ ପ୍ରେରିତ କରୁଥିଲା । ଏକ ଅଶାନ୍ତ ଧୂମକେତୁ ଭଳି, ସେ ତାହାରି ଅନ୍ୱେଷଣରେ କଟକରୁ ବାଲେଶ୍ୱର, ପୁଣି ଘାଟଶିଳା ପର୍ଯ୍ୟନ୍ତ ଘୂରି ବୁଲୁଥିଲେ । ମନର ଆକୁଳତାକୁ ବାହାରେ ପ୍ରକାଶ କରି ଗୁରୁଭାର ଲାଘବ କରିବା ମଧ୍ୟ ସେ କାଳରେ ସମ୍ଭବ ନ ଥିଲା । ଅତି ଅଳ୍ପ ବୟସରୁ ସେ ଯେଉଁ ସାମାଜିକ ଖ୍ୟାତି ଲାଭ କରିଥିଲେ, ଏସବୁ ତାହାର ବାଧକ ମଧ୍ୟ ଥିଲା । କାହା ସହିତ ନିଜର ନମନୀୟ ସମସ୍ୟାକୁ ବିଶ୍ଳେଷଣ କରିବାର ସୁଯୋଗ ମଧ୍ୟ ନ ଥିଲା । ଜନଅରଣ୍ୟ ମଧ୍ୟରେ

କୁନ୍ତଳା ଥିଲେ, ସମ୍ପୂର୍ଣ୍ଣ ଏକାକୀ, ନିଃସଙ୍ଗ । ତେଣୁ ନିଜ ଭାବନାକୁ ହୃଦୟର ଗଭୀରତମ ପ୍ରଦେଶରେ ଲୁଚାଇ ରଖି ସେ କାଗଜ କଲମରେ ନିଜର ବ୍ୟଥାକୁ ଢାଳି ଦେଉଯାଉଥିଲେ । ଟିକିଏ ସୁଖ ଏବଂ ସାଂସାରିକ ଆନନ୍ଦ ନିମନ୍ତେ ତାଙ୍କର ଆକୁଳତା "ସୁଖୀ ଯଦି ମୋତେ କରି ନ ପାରିବ, କିପାଁ ଦେଲ ସୁଖ ପିପାସା । ଦୁଃଖୀ ଯଦି ମୋତ କରି ରଖିଥିବ, କିପାଇଁ ନ ଦିଅ ନିରାଶା-" ପ୍ରଭୃତି ପଂକ୍ତିରେ ପ୍ରକାଶିତ ହୋଇ ପଡୁଥିଲା ।

କବି ମାତ୍ରେ ହିଁ ଆବେଗ-ପ୍ରବଣ । ଏହି ଆବେଗ-ପ୍ରବଣତା ପୁଣି ଦୁଃଖବୀଜର ଉର୍ବର କ୍ଷେତ୍ର । କୁନ୍ତଳାକୁମାରୀ ନିଜର ସ୍ୱଳ୍ପକାଳର ଜୀବନ ମଧ୍ୟରେ ସାଂସାରିକ ଆନନ୍ଦର ସ୍ପର୍ଶ ମାତ୍ର ଲାଭ କରିଥିବା ଭଳି ଦେଖାଯାଉ ନାହିଁ । ଦୁଇଟି ପୁରୁଷ, ତାଙ୍କ ଜୀବନର ଦୁଇ ସମ୍ଭାବନାମୟ ଅଂଶକୁ ସମ୍ପୂର୍ଣ୍ଣ ବିଷାକ୍ତ କରି ଦେଇଥିବାର ଜଣାପଡୁଛି । ତନ୍ମଧ୍ୟରୁ ପ୍ରଥମ ଜଣକ ତାଙ୍କର ପିତା ଦାନିଏଲ୍ ସାବତ୍, ଯାହାଙ୍କର ନାରୀ ଲୋଲୁପତା, କୁନ୍ତଳା-ପରିବାରର ସମସ୍ତ ଆନନ୍ଦକୁ ନଷ୍ଟଭ୍ରଷ୍ଟ କରି ଦେଇଥିଲା । ଦାନିଏଲ୍ ବର୍ମାରେ ଅନ୍ୟ ନାରୀ ସଂସର୍ଗରେ ଜୀବନର ମାଧୁର୍ଯ୍ୟ ତିଳତିଳ କରି ଉପଭୋଗ କରୁଥିବା ସମୟରେ ଜନନୀ ଏବଂ ଭ୍ରାତାଭଗ୍ନୀଙ୍କ ସହ କୁନ୍ତଳା ଏକ ଉପେକ୍ଷିତ ଶୈଶବ ଏବଂ କୈଶୋର କଟାଇ ଦେଇଥିଲେ । ଦୁଃଖ ଏବଂ ନୈରାଶ୍ୟକୁ ଜୀବନର ଚରମ ତଥା ପରମ ସତ୍ୟ ମନେ କରି ନେଇ ନୀରବରେ ତଳେଇ ଯିବା ତାଙ୍କର ଲକ୍ଷ୍ୟ ନ ଥିଲା । ସୁଖ ଆଉ ଆନନ୍ଦ ପାଇଁ ଝୁରି ହେବାରେ ଯେ ମଣିଷ ପଣିଆର ସାର୍ଥକତା ନାହିଁ ଏହା ସେ ସେତେବେଳେ ମଧ୍ୟ ବୁଝିପାରିଥିଲେ, ହୁଏତ ଏହି ମାନସିକ ଦୃଢ଼ତାରୁ ହିଁ ସେ ଶିକ୍ଷା ପାଇଥିଲେ-

"ଶୁଣରେ ମଣିଷ ଭାଇ,
ଝୁରି ମରିବାକୁ, ବୁଡ଼ି ମରିବାକୁ, ମଣିଷ ଜନମି ନାହିଁ ।" (ସ୍ଫୁଲିଙ୍ଗ)

ଆଶାବାଦିନୀ କବି ଭବିଷ୍ୟତ୍ ସମ୍ଭାବନାରେ ଦୁଃଖ ଏବଂ ଦାରିଦ୍ର୍ୟ ବିରୁଦ୍ଧରେ ଯୁଦ୍ଧଘୋଷଣା କରି ମୁଣ୍ଡଟେକି ଚାଲିବାକୁ ଉଦ୍ୟମ କଲେ ଏବଂ ସେଥିରେ କେତେକାଂଶରେ ସଫଳ ମଧ୍ୟ ହେଲେ । ଡାକ୍ତରୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଯିବାପରେ ଆଶା କରାଯାଉଥିଲା, ଅନ୍ତତଃ ଏଥର ତାଙ୍କ ଜୀବନରେ ଶାନ୍ତି ଆସିବ । ସ୍ୱଚ୍ଛଳତା ନ ଆସୁ, ପରିପୂର୍ଣ୍ଣତା ଆସିବ ଏବଂ ତୃପ୍ତି ଆସିବ । ମାତ୍ର ଏ ସବୁ କେବଳ କଳ୍ପନାରେ ହିଁ ରହିଗଲା । ଭାଗ୍ୟବିଧାତାଙ୍କର କୂଟ ଚକ୍ରାନ୍ତରେ ଇତି ମଧ୍ୟରେ ତାଙ୍କ ଜୀବନ ଉପରେ ରାହୁର କ୍ରୂର ଦୃଷ୍ଟି ପଡ଼ି ସାରିଥିଲା । ସେ ରାହୁ ଡାକ୍ତର କୈଳାସ ରାଓ, କୁନ୍ତଳାଙ୍କ ଜୀବନର ଦ୍ୱିତୀୟ ନିଷ୍ଠୁର ପୁରୁଷ ।

କୈଳାସଙ୍କର ଯଥାର୍ଥ ମନୋଭାବ କ'ଣ ଥିଲା, ଅନ୍ତତଃ କୁନ୍ତଳାଙ୍କର ଭବିଷ୍ୟତ ସମ୍ପର୍କରେ ସେ କ'ଣ ଚିନ୍ତା କରୁଥିଲେ, ତାହା ସ୍ପଷ୍ଟ ଭାବରେ ଜଣା ନ ଗଲେ ମଧ୍ୟ ଗୋଟିଏ କଥା ଅତ୍ୟନ୍ତ ସ୍ପଷ୍ଟ ହୋଇଯାଏ । କୁନ୍ତଳାଙ୍କୁ ନେଇ ଗୋଟିଏ ସଂସାର ଗଢ଼ିବା ଅନ୍ତତଃ ତାଙ୍କର କଳ୍ପନାରେ କେବେ ନ ଥିଲା । ତେଣୁ ସେ ନିଜେ ସ୍ତ୍ରୀ ପୁତ୍ର ନେଇ ଗୋଟିଏ ପୂର୍ଣ୍ଣ ସାଂସାରିକ ଜୀବନ ଯାପନ କରୁଥିବାବେଳେ (ଅବଶ୍ୟ କହିବା ବାହୁଲ୍ୟ ଯେ, ସେ ସଂସାରରେ ମଧ୍ୟ କେବେ ଶାନ୍ତି ନ ଥିବ) କୁନ୍ତଳାଙ୍କୁ ବାରମ୍ବାର ଉପଦେଶ ଦେଉଥିଲେ, "ତୁମେ ଗେରୁଆ ପିନ୍ଧ । ତୁମେ ମାଛ, ମାଂସ, ଅଣ୍ଡା, ଘିଅ ଏସବୁ ଛାଡ଼ିଦିଅ । ତପସ୍ୱିନୀ ଭାବରେ କାଳଯାପନ କର । ତୁମର ରାଜସିକ, ତାମସିକ ମନୋଭାବ ଦୂର ହୋଇ ସାତ୍ତ୍ୱିକତା ଆପେ ଆସିଯିବ-" (କୁନ୍ତଳା କୁମାରୀ ଜୀବନ ଚରିତ୍ର : ପୃ : ୯୧) ହାୟରେ ପୁରୁଷ ! ପୂର୍ଣ୍ଣ ଯୌବନରେ ପ୍ରେମିକାକୁ ସନ୍ନ୍ୟାସର ଦୀକ୍ଷା ଦେଇ ନିଜର ପୌରୁଷର ସ୍ୱାକ୍ଷର ରଖିଯିବା ନିମନ୍ତେ ଯେ ଚେଷ୍ଟା କରେ, ତାକୁ ଆମେ କ'ଣ କହିବା ? ମାନବିକତାର ଏହି ବୀଭତ୍ସ, ବିକଳାଙ୍ଗ ମୂର୍ତ୍ତିକୁ ଆମେ କେଉଁଠି ନେଇ ବସାଇବା ?

ଛାତ୍ରାବସ୍ଥାରେ କୁନ୍ତଳା ବନ୍ଧୁଭାବରେ କୈଳାସଙ୍କ ଦ୍ୱାରା ଉପକୃତ ହୋଇଥିବାର କୁହାଯାଉଛି । ତେଣୁ ତାଙ୍କର ରାଓଙ୍କ ପ୍ରତି କୃତଜ୍ଞତା ପ୍ରକାଶ ପାଇବା ସ୍ୱାଭାବିକ । କବି-ହୃଦୟ ଉଚ୍ଛ୍ୱାସପ୍ରବଣ ହୋଇଥିବାରୁ ଏଥିରେ ତୀବ୍ରତା ଆସିଯିବା ମଧ୍ୟ ସ୍ୱୀକାର୍ଯ୍ୟ । ମାତ୍ର ପ୍ରୌଢ଼ ଏବଂ ସଂସାରୀ କୈଳାସ ଚନ୍ଦ୍ର କେଉଁ କାରଣରୁ କୁନ୍ତଳାଙ୍କୁ ନିକଟକୁ ଆସିବାକୁ ସୁଯୋଗ ଦେଲେ ? ସେ କ'ଣ ଏଭଳି ଏକ ସମ୍ପର୍କର ପରିଣାମ ଚିନ୍ତା କରି ନ ଥିଲେ ? ବରଂ ତାଙ୍କର ପରବର୍ତ୍ତୀ ଆଚରଣରୁ ଏହା ହିଁ ପ୍ରତିପାଦିତ ହେଉଛି ଯେ, କୁନ୍ତଳାଙ୍କ ପାଇଁ କୈଳାସଙ୍କ ହୃଦୟରେ ସେଭଳି କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ନ ଥିଲା । ବରଂ କୁନ୍ତଳା କୈଳାସଙ୍କର ଏକ ସାମୟିକ ଦୁର୍ବଳତା, ଅନ୍ୟ ଚକ୍ଷୁରେ ନିଜର ମୂଲ୍ୟ ପରୀକ୍ଷା କରାଇନେବାର ଏକ ପିଲାଳିଆ ଖିଆଲ । ସାମାଜିକ ସମ୍ମାନ ଓ ପ୍ରତିପତ୍ତି ତଥା ପାରିବାରିକ ଜୀବନ ଏ ଉଭୟକୁ ବଜାୟ ରଖି ଅନ୍ୟ ନାରୀ ସହିତ ଗୋପନ ସମ୍ପର୍କ ପ୍ରତିଷ୍ଠା କରିବା- ଏ କେବଳ ଏକ ଅତି ଚତୁର ହିସାବୀ ପକ୍ଷରେ ହିଁ ସମ୍ଭବପର ହୋଇପାରେ । କୈଳାସ ତାହା ହିଁ ଥିଲେ ।

ଜନ୍ମଦାତା ନିଜ ଖିଆଲରେ ଗୋଟିଏ ପରିବାରକୁ ତା' ବାଟରେ ଛାଡ଼ିଦେଇ ନିସ୍ପୃହ ରହିଲେ । ଏ ଦୁଃଖ ଏବଂ ଦୁର୍ଦ୍ଦଶାରୁ କୌଣସି ମତେ ଉତ୍ତୀର୍ଣ୍ଣ ହୋଇ ମୁଣ୍ଡ ଟେକି ଉଠିଲା ବେଳକୁ ଭାଗ୍ୟବିଧାତାଙ୍କର ଚକ୍ରାନ୍ତରେ ପୁଣି ନୂତନ ବିପଦ । ଯେଉଁ ହାତ ଧରି ସେ ଜୀବନର ଅବଶିଷ୍ଟ ପଥକୁ ନିରୁଦ୍‌ବିଗ୍ନ ଭାବରେ ଅତିକ୍ରମ କରି ପାରିବେ ବୋଲି ଦୃଢ଼ବିଶ୍ୱାସ କରିଥିଲେ, ସେଇ ହାତ ହଠାତ୍ ଏକ ବିଷଧର ସର୍ପ ହୋଇ ତାଙ୍କୁ ଦଂଶନ କଲା । ନଇ ମଝିକୁ ନେଇଯାଇ ନିର୍ଲିପ୍ତ ଦାର୍ଶନିକ କଣ୍ଠରେ କହିଲା, "ତୁମର ଯେପରି ଖ୍ୟାତି ବଢ଼ିଗଲାଣି, ଦରିଦ୍ର କୈଳାସ ତୁମକୁ ବିବାହ କରିବା କି ଅସୁନ୍ଦର ନ ହେବ ? ମୁଁ ହୀରା ଖଣ୍ଡିଏ କୋଇଲା ଖଣିରୁ ପାଇଥିଲି । ତା' ଦେହରେ ଲାଗିଥିବା ମଇଳା ଟିକକ ଲୁଗାକାନିରେ ଥରେ ଦୁଇଥର ଦଳି ସଫା କରି ଦେଇଛି ମାତ୍ର । ହୀରକ କେବେ ଗୋଟାଇବା ଲୋକର ହୋଇଥାଏ କି ? ତାହା କୌଣସି ସମ୍ଭ୍ରାନ୍ତ, ବିଦ୍ୱାନ ଓ ପ୍ରତିଷ୍ଠାପନ୍ନ ବ୍ୟକ୍ତିର ବ୍ୟବହାରରେ ସିନା ଆସିବ ।" (ଜୀବନ ଚରିତ : ପୃ :୯୦) କୈଳାସ ଚନ୍ଦ୍ରଙ୍କର ଏଇ ଉକ୍ତି ବାହ୍ୟତଃ ନିତାନ୍ତ ସରଳ ଏବଂ ଅକପଟ ମନେ ହେଉଥିଲେ ମଧ୍ୟ, ବସ୍ତୁତଃ ତାହା ନ ଥିଲା । ସେ କୌଣସିମତେ କୁନ୍ତଳାଙ୍କୁ ତାଙ୍କ ନିଜ ବାଟରେ ଯିବାକୁ ଦେବାର ପକ୍ଷପାତୀ ନ ଥିଲେ । । କୁନ୍ତଳା ଯଦି ସ୍ୱଚ୍ଛନ୍ଦ ଭାବରେ କାହା ସହିତ ଯୋଗଯୋଗ କରୁଥିଲେ, ତେବେ କୈଳାସ ତାଙ୍କୁ ସନ୍ଦେହ କରୁଥିଲେ, ପତ୍ର ଆଘାତରେ ଜର୍ଜରିତ କରୁଥିଲେ । ଏମିତି ଚାଲୁଥିଲା, କୈଳାସ କୌଣସିମତେ ଶାନ୍ତ ହେବା ପର୍ଯ୍ୟନ୍ତ । ସୋନପୁର ମହାରାଜାଙ୍କ ସମ୍ପର୍କରେ ଅଯଥା ଲୋକାପବାଦ ଶୁଣି କୈଳାସ କୁନ୍ତଳାଙ୍କୁ ଯେଉଁ ମାନସିକ ଯନ୍ତ୍ରଣା ଦେଇଥିଲେ, କୁନ୍ତଳାଙ୍କ ପତ୍ରରେ ତାହାର ସ୍ପଷ୍ଟ ଇଙ୍ଗିତ ରହିଛି । କୁନ୍ତଳା ଲେଖିଲେ, "ଏସବୁ ଐକାନ୍ତିକ ମର୍ମଯାତନାରେ କାନ୍ଦି କାନ୍ଦି ମୁଁ ଲେଖିଲି ଜାଣିବା ଲାଗି । ବାହାର ଲୋକଙ୍କ କଥା ଶୁଣି ପାଗଳ ହୋଇଗଲଣି, ନୋହିଲେ ମୋତେ ଅବିଶ୍ୱାସ ଓ ସନ୍ଦେହ କରନ୍ତ ? (ଜୀବନ ଚରିତ : ପୃ. ୧୬୪) ଏଥିରୁ କେବଳ ଏତିକି ପ୍ରତିପାଦିତ ହେଉଛି ଯେ, କୁନ୍ତଳାଙ୍କୁ ହସ୍ତାନ୍ତରିତ କରିବାର କୌଣସି କଳ୍ପନା କୈଳାସଙ୍କର ନ ଥିଲା । ବରଂ ତାଙ୍କୁ ନିଜ ଡ୍ରଇଂ- ରୁମ୍‌ର ଏକ ମହାର୍ଘସୁନ୍ଦର ସୋଫିସ୍ ରୂପରେ ଚିରକାଳ ରଖିବା ହିଁ ଥିଲା ତାଙ୍କର ଏକାନ୍ତ ଇଚ୍ଛା । ବାହାର ଘରର ଚୌହଦୀ ଡେଇଁ କୁନ୍ତଳା କିନ୍ତୁ ଯେ ତାଙ୍କର ଅନ୍ତଃପୁର ମଧ୍ୟରେ ପାଦ ଥୋଇବେ, କୈଳାସ କସ୍ମିନ୍‌କାଳେ ଏହା କାମନା କରୁ ନ ଥିଲେ । କୌଣସିମତେ ପ୍ରତିଶ୍ରୁତି, ସ୍ତୋକ ସାହାଯ୍ୟରେ କାଳକ୍ଷେପଣ କରିବାକୁ ହିଁ ଚାହୁଁଥିଲେ । କବି କୁନ୍ତଳାକୁମାରୀ ସୂର୍ଯ୍ୟମୁଖୀ ଭଳି ସୁଖଦୁଃଖରେ ଊର୍ଦ୍ଧ୍ୱମୁଖ ହୋଇ ଯେଉଁ ପୁରୁଷ-ସୂର୍ଯ୍ୟକୁ ଏକାଗ୍ର ଦୃଷ୍ଟିରେ ଅନାଇ ବାଟ ଚାହୁଁଥିଲେ, ପ୍ରଣୟ ଛଳଛଳ ହୃଦୟଟିଏ ନେଇ ତାଙ୍କରି ପଦପ୍ରାନ୍ତରେ

ଥୋଇ ଦେବାକୁ ଜୀବନ ପଣ କରି ନେଇଥିଲେ, କୌଣସି କାରଣରୁ ତାଙ୍କୁ ଅବିଶ୍ୱାସ କରିବା ତାଙ୍କ ପକ୍ଷରେ ସମ୍ଭବପର ନ ଥିଲା । ବରଂ ତାଙ୍କୁ ହିଁ ଲକ୍ଷ୍ୟ କରି କବିକଣ୍ଠରୁ ବାହାରୁଥିଲା ।

"ଆସହେ ଆସହେ ପ୍ରାଣର ଦେବତା
ଆସହେ ହୃଦୟ-ଭବନେ,
ଚାହିଁ ବସିଅଛି ଆକୁଳ ପରାଣେ
ପ୍ରେମ ପିପାସିତ ନୟନେ-" (ପ୍ରାର୍ଥନା)

କୈଳାସ କେବଳ ନେଉଥିଲେ, ପୁରୁଷର ମହିମାମଣ୍ଡିତ ସିଂହାସନରେ ବସି ଉପର ହାତରେ ପୂର୍ଣ୍ଣ ମହିମାରେ, ଅଧିକାରବୋଧରେ । କୁନ୍ତଳା ଦେଉଥିଲେ, ପ୍ରେମିକାର ତାଦାତ୍ମ୍ୟ ରୀତିରେ, ମୁଗ୍ଧ, ବିନୀତ, ବଶମ୍ୱଦ ଭାବରେ । ଦୀର୍ଘକାଳ ସର୍ବସ୍ୱ ନେଇ ମଧ କୈଳାସ ଯେଉଁଭଳି ସନ୍ତୁଷ୍ଟ ତୃପ୍ତ ନ ଥିଲେ, କୁନ୍ତଳା ନିଜକୁ ପୂର୍ଣ୍ଣରୂପେ ଉଜାଡ଼ି ଦେଇ, ଆହୁରି ଦେବା ନିମନ୍ତେ ତତୋଧିକ ଅଧୀରା ଥିଲେ ।

ଯାହାହେଉ, ଏକ ବଞ୍ଚିତା ଏବଂ ପ୍ରବଞ୍ଚିତା ନାରୀଆତ୍ମା ଏହିଭଳି ଦୟନୀୟ ସ୍ଥିତିରେ ନିଜର ସାର୍ଥକତା ନିମନ୍ତେ ଯେତେବେଳେ ସାମାନ୍ୟ ଟିକିଏ ମାଟି ଖୋଜୁଥିଲା, ସେତେବେଳେ ତାଙ୍କର ଦୃଢ଼ ବିଶ୍ୱାସ ଥିଲା, ଜୀବନ କେବେହେଲେ ତାଙ୍କ ସହିତ ଏଭଳି ପ୍ରତାରଣା କରିବ ନାହିଁ । ଖାଲି ହାତରେ କେବେହେଲେ ଏ ସଂସାରରୁ ତାଙ୍କୁ ଫେରି ଯିବାକୁ ପଡ଼ିବ ନାହିଁ । ତେଣୁ ସେ ନିଜର ଇପ୍‌ସିତ ବସ୍ତୁ ଲାଭ ନିମନ୍ତେ ବ୍ୟସ୍ତ ବିଚଳିତ ହୋଇ ଉଠୁଥିଲେ । କୁନ୍ତଳାଙ୍କର କାମନା ଥିଲା, ଅତ୍ୟନ୍ତ ସାଧାରଣ ଏବଂ ସାମାନ୍ୟ ମଧ । ଜଣେ ସାଧାରଣ ନାରୀ ଯାହା ଚାହେଁ, ଗୋଟିଏ ବଶମ୍ୱଦ ସ୍ୱାମୀ, ଗୋଟିଏ ଦୁଇଟି ସନ୍ତାନ, ବାସ୍ ଏତିକି ମଧରେ ହିଁ ତାଙ୍କର କାମନାର ପରିଧି ସୀମିତ ଥିଲା । ସେତକ ପାଇଁ ସେ ନିତାନ୍ତ ଆକୁଳ ହୋଇ ପଡ଼ିଥିଲେ । ଏ ବ୍ୟାକୁଳତା ତାଙ୍କର ଆରମ୍ଭ ହୋଇଥିଲା ୧୯୨୧ ମସିହାରୁ ଏବଂ ସାମୟିକ ଭାବରେ ସମାପ୍ତ ହୋଇଥିଲା ୧୯୨୮ ମସିହାରେ, ତାଙ୍କର ବିବାହ ପରେ ।

କୁନ୍ତଳାଙ୍କ ପ୍ରେମରେ କୌଣସି ଆବିଳତା ଅଥବା ଦ୍ୱିଧା ଥିବାର ଦେଖାଯାଏ ନାହିଁ । ବରଂ ସେ ଅଟଳ ଥିଲେ ନିଜ ମତରେ ଏବଂ ଦୃଢ଼ ଥିଲେ ନିଜ ପଥରେ । କୈଳାସ ତାଙ୍କୁ ଏଡ଼ାଇ ଯିବାକୁ ଚାହିଁଲେ ସେ କହୁଥିଲେ-

"ଯେତେ କରୁଥିବ ମନା ମୁଁ ଆସିବି
ତୁମରି ଦୁଆର କତିକି,
ତୁମ ଗାଳିମାଡ଼ ସହିବା କାରଣ
ଦୃଢ଼ କରିଥିବ ଛାତିକି ।
X X X
ମୃତ୍ୟୁରୂପେ ଯଦି ଆସିବ କତିକି
ସୁଖେ ମୁଁ ଘେନିବି କୋଳରେ,
ଆଦରେ ମରଣ ବରଣ କରି ଗୋ
ମରିବି ଚରଣ ତଳରେ ।"

କିମ୍ବା-

"ଯେତେ ପଳାଇବ ଯିବି ଗୋଡ଼ାଇ
ନିରିମଳ ପ୍ରୀତି ଦେବି ବଢ଼ାଇ ।"

ପରିପୂର୍ଣ୍ଣ ଜୀବନର ଆସ୍ୱାଦ ଲାଭ କରିବା ନିମନ୍ତେ କୁନ୍ତଳାଙ୍କ ପ୍ରାଣ ଅଧୀର ହୋଇ ଉଠିବା ସ୍ୱାଭାବିକ । ମାତ୍ର ହିନ୍ଦୁ କୈଳାସ ଜଣେ ଖ୍ରୀଷ୍ଟିୟାନ ଯୁବତୀର ପାଣିଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି । ତାହା ଦ୍ୱାରା ତାଙ୍କର ରକ୍ଷଣଶୀଳ ପରିବାରରରେ ଯେଉଁ ଝଡ଼ ଉଠିବ, କୈଳାସ ତାହାର ସମ୍ମୁଖୀନ ହୋଇ ପାରିବେ ନାହିଁ । ଧର୍ମାନ୍ତରରେ ଏହି ସୁଯୋଗ ହୁଏତ ମିଳିପାରେ ବୋଲି ଆଶା କରି କୁନ୍ତଳା ବ୍ରାହ୍ମଧର୍ମର ଦ୍ୱାରସ୍ଥ ହେଲେ ଏବଂ କୈଳାସଙ୍କ ପରାମର୍ଶରେ ୧୯୨୪ରେ ବ୍ରାହ୍ମଧର୍ମ ଗ୍ରହଣ କରିନେଲେ । କୁନ୍ତଳା ଧର୍ମରେ ଖ୍ରୀଷ୍ଟିୟାନ୍ ଥିଲେ ମଧ ଏ ଦେଶର ସନାତନ ବିଶ୍ୱାସ ତାଙ୍କ ରକ୍ତରେ ମିଶି ରହିଥିଲା ଭଳି ମନେହୁଏ । ବିଶେଷକରି ହିନ୍ଦୁ ଧର୍ମର ପୁନର୍ଜନ୍ମବାଦ ତାଙ୍କୁ ଗଭୀର ଭାବରେ ପ୍ରଭାବିତ କରିଥିଲା । ସେ ନିଜକୁ କୈଳାସଙ୍କର ଜନ୍ମଜନ୍ମାନ୍ତରର ପତ୍ନୀ ବୋଲି ମନେ କରୁଥିଲେ । ସେ ୧୯୨୫ ମସିହାରେ କୈଳାସଙ୍କୁ ପତ୍ର ଲେଖି ଏ ବିଷୟ ସୂଚାଇ ଦେଇଥିଲେ । ତାଙ୍କ ଦୃଷ୍ଟିରେ, "ମାନବର ପୁନର୍ଜନ୍ମ ବିଷୟରେ ପ୍ରମାଣ ତୁମକୁ କ'ଣ ଦେବାକୁ ହେବ ? X X ତୁମେ ଓ ମୁଁ ଯେପରି ସତ୍ୟ, ଧର୍ମ ଯେପରି ସତ୍ୟ, ସତ୍ୟ ଯେପରି ଜ୍ୱଳନ୍ତ ଉଜ୍ଜ୍ୱଳ, ଏ କଥା ବି ସେହିପରି ସତ୍ୟ X X ତୁମର ମୋର ଜୀବନକୁ ଅନାଅ । ମୋତେ ଦେଖିଲା ମାତ୍ରେ ତୁମେ ଭଲ ପାଇଲ । ମୋର ସ୍ୱର ଶୁଣିଲେ ତୁମେ ସୁଖୀ ହେଲ । ପୁଣି ଦେଖ, ମୋର ଆଶ୍ଚର୍ଯ୍ୟ ପାଠ ଓ କବିତାଦିର ଶକ୍ତି । ଏ ବିଦ୍ୟା ପୂର୍ବଜନ୍ମାର୍ଜିତ"– ଯେଉଁ ଆଶାରେ କୁନ୍ତଳା ବ୍ରାହ୍ମଧର୍ମ ଗ୍ରହଣ କଲେ, ସେ ଆଶା କିନ୍ତୁ ଫଳବତୀ ହେଲା ନାହିଁ । କୈଳାସ ସ୍ୱୟଂ ଧର୍ମାଂତରିତ ହେବାକୁ ସାହସ କରି ପାରିଲେ ନାହିଁ । ଏତିକିବେଳେ କୁନ୍ତଳାଙ୍କୁ ବ୍ରାହ୍ମଧର୍ମର ବହୁ ସୁଯୋଗ୍ୟ ପାତ୍ରଙ୍କ ସମ୍ପର୍କରେ ସୂଚନା ଦିଆଯାଇ, ତାଙ୍କ ମଧ୍ୟରୁ ଜଣକୁ କାହାକୁ ହେଲେ ସ୍ୱାମୀ ରୂପରେ ଗ୍ରହଣ କରି ନେବାକୁ ପ୍ରସ୍ତାବ ଦିଆଗଲା । ମାତ୍ର କୁନ୍ତଳା ହିନ୍ଦୁ ନ ହୋଇ ମଧ ହିନ୍ଦୁ ନାରୀର ଏକପତିବ୍ରତ ସମ୍ପର୍କୀୟ ସନାତନ ଧାରଣାରେ ଦୃଢ଼ ରହିଲେ । ସେ ଦ୍ୱିଚାରିଣୀ ହେବା ବିଷୟ ସ୍ୱପ୍ନରେ ସୁଦ୍ଧା ଚିନ୍ତା କରୁ ନ ଥିଲେ ।

ଏହି ସମୟରେ ମାନସିକ ଯନ୍ତ୍ରଣା ଭୁଲାଇବା ନିମନ୍ତେ ସେ ନିଜକୁ ଅନ୍ୟଆଡ଼େ ବିସ୍ତୃତ କରିଦେବାକୁ ଆରମ୍ଭ କରିଥିଲେ । ଚକ୍ରଧର ମହାପାତ୍ରଙ୍କୁ ଚିଠି ଲେଖି ଜଣାଇଦେଲେ, "ମୁଁ କେବଳ ଭକ୍ତ ହେବି, ଏହା ମୋର ଉଦ୍ଦେଶ୍ୟ ନୁହେଁ । ଯେତେଦିନ ବଞ୍ଚିଥିବି, ସାହିତ୍ୟରେ ହେଉ, ସେବାରେ ହେଉ, ଶିକ୍ଷାଦାନରେ ହେଉ, ଧନ ବାଣ୍ଟିବାରେ ହେଉ, ଚିକିତ୍ସାରେ ହେଉ, ନାନାଭାବରେ ଯେତେ ପାରିବେ, ମୋ ଜାତିର ଉନ୍ନତି ସଂଗେ ସଂଗେ ବହୁ ସଦ୍‌ଗୁଣବନ୍ତ ମନୁଷ୍ୟ ଗଢ଼ିଯିବି । ବିଶେଷରେ କୁସଂସ୍କାରର ସମୂର୍ଣ୍ଣ ଉଚ୍ଛେଦ ପାଇଁ ମୁଁ ବଦ୍ଧପରିକର ହେବି ।" (ଜୀବନ ଚରିତ : ପୃ: ୧୬୩-୬୪) ଏତିକିବେଳେ ପୁଣି ଜାତୀୟତାର ପ୍ରସାର ନିମନ୍ତେ ଉଦଗ୍ର ବ୍ୟାକୁଳତା– "ନିଜର ସର୍ବସ୍ୱ ଦେଇ ଓଡ଼ିଶାକୁ ପାଠ ପଢ଼େଇବାକୁ ମୁଁ ବସିଛି । X X ପାଣ, ହାଡ଼ି, କଣ୍ଡରା, ବାଉରି–ଯାଙ୍କୁ ମଣିଷ କରିବି । X X ଯେଉଁ ହାଡ଼ି, ପାଣ, ତନ୍ତୀ X X ଗଉଡ଼ଙ୍କୁ ଲୋକେ ହେୟଜ୍ଞାନ କରିଥିଲେ, ସେଇତ ସମାଜର ମେରୁଦଣ୍ଡ । ଏଥିରେ ଜାତିର ଗର୍ବ ନାହିଁ, ଧର୍ମର ଭିନ୍ନତା ନାହିଁ । ଓଡ଼ିଆ ମାତୃଭାଷା, ସମସ୍ତଙ୍କର ଭାଷା" (ଜୀବନ ଚରିତ : ପୃଷ୍ଠା : ୨୨୩-୨୪) କେତେବେଳେ କବିମନ ପୁଣି ସ୍ୱାଧୀନତା ସମ୍ପର୍କରେ ଗଭୀର ଭାବରେ ଚିନ୍ତା କରୁଛି– "ମୁଁ ସ୍ୱାଧୀନତା ପାଇଁ ପାଗଳ । ଆମ୍ଭେମାନେ ପ୍ରକୃତ ସ୍ୱାଧୀନ ହେବୁଁ ନା କଳ୍ପନାର କଳ୍ପଲୋକରେ ଚାଲୁଥିବୁ ? X X ଗୋଲାମୀ କରି କରି ସରିଗଲୁଣି । କେବେ ବନ୍ଧନମୁକ୍ତ ହେବା ? ଆମେ ଯେପରି ପୂର୍ଣ୍ଣ ସ୍ୱାଧୀନ, ସ୍ୱାବଲମ୍ବୀ, ବ୍ୟବସାୟୀ, ନିର୍ଭୀକ, ପୂର୍ଣ୍ଣ ସ୍ୱଦେଶୀ ହେବା– ତାଇ ବ୍ରତ ଗ୍ରହଣ କରି ଭଗବାନଙ୍କ ପାଖରେ ଶପଥ ଗ୍ରହଣ କରିବା–" (ଜୀବନ ଚରିତ : ପୃ ୨୨୮) ୧୯୨୬-୨୭ ମସିହା ବେଳକୁ କୁନ୍ତଳା ଯେଉଁ ମାନସିକ ଅସ୍ଥିରତା ମଧ ଦେଇ ଗତି କରୁଥିଲେ, ଏହିସବୁ ଭିନ୍ନ ଭିନ୍ନ ଚିନ୍ତା ମଧ୍ୟରୁ ତାହାର ଏକ ସ୍ପଷ୍ଟ

ପରିଚୟ ମିଳିବ । ଯେଉଁ ବିଷୟ ପାଇଁ ସେ ନିଜର ଧର୍ମ ପର୍ଯ୍ୟନ୍ତ ପରିତ୍ୟାଗ କଲେ, ତାହା ଯେତେବେଳେ ସଫଳ ହେଲା ନାହିଁ, ତାଙ୍କ ପକ୍ଷରେ ଅନ୍ୟ ଅବଲମ୍ବନର ସନ୍ଧାନ କରିବା ଏକ ସ୍ୱାଭାବିକ କଥା ।

ସୁଖର ଅନ୍ୱେଷଣରେ ଗୋଟିଏ ତରୁଣୀ ପ୍ରାଣର ଆକୁଳତା କିଏ ବୁଝିଲା ? ଯେଉଁ ସଂସାର ପାଇଁ ସେ ନିଜକୁ ସଂପୂର୍ଣ୍ଣରୂପେ ରିକ୍ତ କରି ଉତ୍ସର୍ଗ କରିଦେଇଥିଲେ, ପ୍ରତିଦାନରେ ତା'ଠୁଁ ବା ପାଇଥିଲେ କ'ଣ ? ସେଇ ଦୁର୍ଲ୍ଲଭ ବସ୍ତୁ କିଏ କ'ଣ କାହାକୁ ଦିଏ ? ତାକୁ ଯେ ଛଡ଼ାଇ ନେବାକୁ ହୁଏ, ସେ କଥା ତାଙ୍କର ଆବେଗ-ପ୍ରବଣ କବିପ୍ରାଣରେ ଧରା ପଡ଼ିଲା ନାହିଁ ? ଆନନ୍ଦ ଆଉ ତୃପ୍ତି ସଂସାରରେ କେହି କାହାକୁ ଦିଏ ନାହିଁ । ସେତକ ଅଧିକାର କରିନେବାର ପଦାର୍ଥ । କ୍ଷମତା ଆଉ ପ୍ରତିପତ୍ତି ବଳରେ ତାକୁ ଅଧିକାର କରିନେବାକୁ ହୁଏ, ଏ ବିଷୟଟି ମାତ୍ର କୁନ୍ତଳାଙ୍କ ଅଭିଜ୍ଞ ମନରେ ପ୍ରତିଫଳିତ ହେଉ ନ ଥିଲା ।

କୁନ୍ତଳା ଦାରିଦ୍ର୍ୟ ଦେଖିଥିଲେ । ଜୀବନରେ ପ୍ରତିଷ୍ଠିତ ହୋଇ, ଧନ ଅର୍ଜନ କରି ସମ୍ପଦର ନିଶା ତାଙ୍କର ମେଣ୍ଟି ଯାଇଥିଲା । ଅଭାବ ଥିଲା ଟିକିଏ ସ୍ନେହର, ଗୋଟିଏ ପ୍ରେମ ଛଳଛଳ ହୃଦୟର, ନିବିଡ଼ ଆନ୍ତରିକତାର । କୈଳାସ ରାଓ ସାମାଜିକ ବିଧିନିଷେଧ ମଧ୍ୟରେ ଯେତିକି ଦେଇ ପାରୁଥିଲେ, ସେଥିରେ ନବାନୁରାଗିଣୀ ପ୍ରେମିକାର ମନ ଭରୁ ନ ଥିଲା, ଭରିବାର ନ ଥିଲା ମଧ୍ୟ । ଯାହାହେଉ, ଜୀବନନୌକା ତାଙ୍କର ଏକଦା ପୂର୍ଣ୍ଣ ହୋଇଥିଲା, ଅର୍ଥ ଆଉ ପ୍ରେମରେ । କ'ଣ ଯେ ହେଲା, ପ୍ରେମ କ୍ରମଶଃ ଅଦୃଶ୍ୟ ହୋଇଗଲା । ରହିଗଲା କେବଳ ଶୃଙ୍ଖଳା ଅର୍ଥ । ଅର୍ଥ ତାଙ୍କର ପ୍ରୟୋଜନ ଯେ ନ ଥିଲା, ତାହା ନୁହେଁ । ମାତ୍ର ତାହା ତାଙ୍କ ପାଇଁ ପ୍ରାଥମିକ ଥିଲା । ସେ ଚାହୁଁଥିଲେ ସୁଖ । ତା'ର ବିନିମୟରେ ସେ ଯେ କୌଣସି ଭୟଙ୍କର କାମ କରିବାକୁ ମଧ୍ୟ ପ୍ରସ୍ତୁତ ଥିଲେ, ମାତ୍ର ଇପ୍‌ସିତ ବସ୍ତୁ, ନ ପାଇ କ୍ରମଶଃ ସେ ଅପ୍ରକୃତିସ୍ଥ ହୋଇ ଉଠୁଥିଲେ । ବୁଡ଼ିଗଲା ଲୋକ କୁଟାଖିଅକୁ ଆଶ୍ରା କଲାଭଳି, ଯାହାଠୁଁ ଟିକିଏ ସହାନୁଭୂତି ମିଳିବ ବୋଲି ଭାବୁଥିଲେ, ତାକୁ ଜାବୁଡ଼ି ଧରୁଥିଲେ । ସେ ସଦାଶିବ କାବ୍ୟକଣ୍ଠ ହୁଅନ୍ତୁ; ହୁଅନ୍ତୁ ଅବା ନଗେନ୍ଦ୍ର ଭଟ୍ଟାଚାର୍ଯ୍ୟ । ଗୋଟିଏ ପିପାସିତ ପ୍ରାଣର ଆକଣ୍ଠ ପିପାସା ମେଣ୍ଟାଇବା ନିମନ୍ତେ ହିଁ ଏମାନଙ୍କର ପ୍ରୟୋଜନ ହୋଇ ପଡୁଥିଲା । କୁନ୍ତଳା ସ୍ୱୟଂ ଲେଖିଥିଲେ–

"ଅର୍ଦ୍ଧୁତ ନିର୍ମାଖୀ ବୁଲିବି ସଂସାରେ
ଭିକାରୁଣୀ ବେଶେ ଦୁଆରେ ଦୁଆରେ
ଭଙ୍ଗା କେନ୍ଦରାରେ ଗାଇବି ତା' ନାମ
ସେତକି ମୋ ଧର୍ମ ଧାରଣା,
ଯୋଗ-ଯାଗ, ଜପ-ତପ, କାଷ୍ଠା-ନିଷ୍ଠା
ପୂଜା ପାଠ ମୋତେ ଅଜଣା ।" (ପ୍ରେମଚିନ୍ତାମଣି)

ଏହାରି ଭିତର ଦେଇ କୁନ୍ତଳାକୁମାରୀ ସତେ ଯେପରି ନିଜକୁ ଢାଳି ଦେଇଥିଲେ । ଏଡ଼େ ଜ୍ଞାନବତୀ ନାରୀଟି ନିଜର ପ୍ରିୟତମ ସହିତ ମିଳିତ ହେବାର କାମନାରେ କେତେ ଯେ ନିର୍ଯ୍ୟାତନା ଏବଂ ଲାଞ୍ଛନା ବରଣ କରିନେଇ ଉପହସିତ ହେଉଥିଲେ, ତାହା ଆଜି ଆଉ କଳ୍ପନା କରିବା ମଧ୍ୟ ସମ୍ଭବପର ନୁହେଁ । ତଥାପି ଏକାଗ୍ର ମନ ତାଙ୍କର ଘୋଷଣା କରୁଥିଲା–

"ସଖି ! ମୁଁ କି ତାରେ ଛାଡ଼ିପାରେ ?
ଜୀବନାଡ଼ ପଛେ ହଜିବ ହୃଦରୁ,
ଜ୍ୟୋତି ଲିଭିଯିବ ବେନି ନୟନରୁ,
X X ଯା' ପାଦେ ମୋ ଜୀବ ସେ ପଦ-ରାଜୀବ
ହେଉ, ଜନ୍ମେ ଜନ୍ମେ ଗଳାହାର ।" (ପ୍ରେମଚିନ୍ତାମଣି)

ନିଜଆଡ଼ୁ କୁନ୍ତଳାଙ୍କର ଆନ୍ତରିକ ଏକାଗ୍ରତାର କୌଣସି ଅଭାବ ନ ଥିଲା । ମାତ୍ର ଏ ପ୍ରେମ ଯେ କ୍ରମଶଃ ଏକତରଫା ହୋଇ ଯାଉଥିଲା, ଏଥିରେ କୌଣସି ସନ୍ଦେହ ନାହିଁ । କାରଣ ହେଉଛି କୈଳାସଙ୍କର ଉଦାସୀନତା । ପ୍ରୌଢ଼-ସଂସାରୀ କୈଳାସ ତରୁଣୀ କୁନ୍ତଳାଙ୍କ ଉଦ୍ଦାମ ପ୍ରେମ ସହିତ ପାଦ ମିଳାଇ ଚାଲିବା ଅବସ୍ଥାରେ ନ ଥିଲେ । ସେ ପୁଣି ଗୋଟିଏ ଆଡ଼େ ଦେଖୁଥିଲେ ନିଜର ପରିବାର ଓ ସାମାଜିକ ପ୍ରତିପତ୍ତିକୁ ଗୁରୁତ୍ୱପୂର୍ଣ୍ଣ ଦୃଷ୍ଟିରେ । ଏଭଳି କ୍ଷେତ୍ରରେ ପରିଣତି ଯାହା ହେବାର କଥା ତାହା ହିଁ ହେଲା । କୈଳାସଙ୍କର ସାଜାହାନୀ ମନ ଦାୟିତ୍ୱ ନନେଇ ପ୍ରେମର ମୋହମୟୀ ବାସ୍ନାରେ ମସଗୁଲ ରହିବାକୁ ଚାହୁଁଥିଲା (ଏହା ହିଁ ତ ସେ କାଳର ସାମନ୍ତବର୍ଗ କରୁଥିଲେ ।) ଯେଉଁ ଦାୟିତ୍ୱ ଏ କ୍ଷେତ୍ରରେ ପୁରୁଷର ବହନ କରିବା କଥା, ନାରୀଟିଏ ସେଥିପାଇଁ ଦ୍ୱାର ଦ୍ୱାର ଭିକ୍ଷା ଝୁଲି ଧରି ବୁଲିବା (ହେଉ ପଛେ ନାରୀଟି ଶିକ୍ଷା ଓ ସଭ୍ୟତା ଦୃଷ୍ଟିରୁ ଅଗ୍ରଗଣ୍ୟା) ବ୍ୟାପାରଟି ଯେ ଅତ୍ୟନ୍ତ ହୃଦୟହୀନତାର ପରିଚାୟକ, ଏହା ଯେ କୌଣସି ସମ୍ବେଦନଶୀଳ ବ୍ୟକ୍ତି ସ୍ୱୀକାର କରିବ ।

୧୯୨୭ ମସିହାରେ କୁନ୍ତଳାକୁମାରୀଙ୍କର ଯୋଗାଯୋଗ କୃଷ୍ଣପ୍ରସାଦ ବ୍ରହ୍ମଚାରୀଙ୍କ ସହିତ ହେଲା । ଏହି କିଂଶୁକଧର୍ମୀ ପୁରୁଷଟିକୁ କୁନ୍ତଳାଙ୍କର ସମସ୍ତ ଦୁର୍ଭାଗ୍ୟର କାରଣ ବୋଲି କୁହାଯାଇଥାଏ । ଏଥିରେ କିଛି ସତ୍ୟତା ଅବଶ୍ୟ ରହିଛି । ମାତ୍ର ମନେ ରଖିବାକୁ ହେବ ଯେ, ଦୀର୍ଘ ଆଠବର୍ଷର ଐକାନ୍ତିକ ପ୍ରେମରୁ କିଛି ନ ପାଇ, କୁନ୍ତଳା ଏତେବେଳକୁ ନିଜକୁ ସମ୍ପୂର୍ଣ୍ଣ ରୂପେ ମିଟାଇ ଦେବା ନିମନ୍ତେ ପ୍ରସ୍ତୁତ ହୋଇଯାଇଥିଲେ । ବ୍ରହ୍ମଚାରୀ ଏଥିରେ ନିମିତ୍ତ ମାତ୍ର ହେଲେ ।

କୁନ୍ତଳା ଆସିଥିଲେ ଏକ ଅଭିଶପ୍ତର ଜୀବନ ନେଇ । ସାମାନ୍ୟ ସାହାଯ୍ୟ ପାଇଁ ସେ ଯାହା ଆଡ଼କୁ ହାତ ବଢ଼ାଇଛନ୍ତି, ତାଙ୍କୁ ସେଠାରୁ ମିଳିଛି କେବଳ ଉପେକ୍ଷା ଏବଂ ପ୍ରତାରଣା । କୈଳାସ ତାଙ୍କ ଜୀବନର ପ୍ରଥମ ପୁରୁଷ, ତାଙ୍କ ବିଷୟ ତ ଆମେ ଦେଖିଲେ । ଜୀବନଚରିତର ଲେଖକ 'ଚକ୍ରଧର', ଯାହାଙ୍କୁ କୁନ୍ତଳା ନିଜର ପୂର୍ବ ଜନ୍ମର ସନ୍ତାନମନେ କରୁଥିଲେ, ଯାହାଙ୍କର ଭବିଷ୍ୟତ ନିମନ୍ତେ ତାଙ୍କର ଦୁଶ୍ଚିନ୍ତାର ଅନ୍ତ ନ ଥିଲା, ବାରମ୍ବାର ଯାହାଙ୍କୁ କୋଳେଇ ନେବାକୁ ସେ ଆଗ୍ରହୀ ହୋଇ ଉଠୁଥିଲେ, ସେକ୍ଷେତ୍ରରେ ମଧ କୁନ୍ତଳା ଯେ ଖୁବ୍ ପାଇଛନ୍ତି, ଏହା କୁହାଯାଇପାରିବ ନାହିଁ । ଏଥିପାଇଁ ଅବଶ୍ୟ ଚକ୍ରଧରଙ୍କୁ ଖୁବ୍ ଦୋଷ ଦେଇହେଉ ନାହିଁ । ଚକ୍ରଧରଙ୍କର ସୀମାବଦ୍ଧତାକୁ କୁନ୍ତଳା ହୃଦୟଙ୍ଗମ କରିବାର ଉଚିତ ଥିଲା ବୋଲି କୁହାଗଲେ ମଧ କୁନ୍ତଳା ନାଚାର ଥିଲେ । ଯେତେ ଶିକ୍ଷିତା ଏବଂ ସ୍ୱାଧୀନ ହେଲେ ମଧ କୁନ୍ତଳା ଥିଲେ ଜଣେ ଭାରତ ନାରୀ । ସାଙ୍ଗରେ କାହାକୁ ନ ନେଇ ସେ ଡାକ୍ତର କରିବାକୁ ମଧ ବାହାରୁ ନ ଥିଲେ । ସଭା ସମିତି, ଜନ ସମ୍ପର୍କ ଯେତେ ଯାହା କଲେ ମଧ କୁନ୍ତଳାଙ୍କ ମଧରେ ଲୁଚି ରହିଥିଲା, ସନାତନ ଭାରତୀୟ ନାରୀ ଆତ୍ମାଟିଏ, ଯେ କି ଆବହମାନ କାଳରୁ ପୁରୁଷ ଉପରେ ନିର୍ଭରଶୀଳା । ସେ କେଉଁ ଯୁଗରେ ମନୁ ଭାରତୀୟ ନାରୀମାନଙ୍କ ପାଇଁ 'ପିତା ରକ୍ଷତି କୌମାରେ'ର ନିୟମ ବାନ୍ଧି ଦେଇଥିଲେ, ତା' ପରଠୁଁ ଭାରତୀୟ ନାରୀ ସ୍ୱାତନ୍ତ୍ର୍ୟର ଦାବି କେବଳ ବଚନରେ ହିଁ କରି ଆସିଛି । କୁନ୍ତଳା ତେଣୁ ଚାହୁଁଥିଲେ ଜଣେ ପୁରୁଷ, ଯାହା ଉପରେ ସେ ନିର୍ଭର କରିପାରିବେ । ଯେ ତାଙ୍କୁ ବାଧ କରାଇ କାମ ହାସଲ କରିବ । କୁନ୍ତଳାଙ୍କର ଦୁର୍ଭାଗ୍ୟ, ଯେଉଁ କେତୋଟି ପୁରୁଷଙ୍କୁ ସେ ନିଜର କରିପାରିଛନ୍ତି ବୋଲି ଭାବୁଥିଲେ ସେମାନଙ୍କର ଯଥାର୍ଥ ସାନ୍ନିଧ୍ୟ ସେ ପାଇ ନାହାନ୍ତି । ଚକ୍ରଧର ନିଜର ଧର୍ମ, ଜାତି ବଜାୟ ରଖି ଯେତିକି କରାଯାଇପାରିଛି, ତାହା କରିଛନ୍ତି ମାତ୍ର ସେତିକିରେ କୁନ୍ତଳାଙ୍କର ବୁଭୁକ୍ଷିତ ସମଗ୍ର ପ୍ରାଣ ଶାନ୍ତ ହେଉଛି କାହିଁ ? ସେ ଲେଖୁଥିଲେ ''ମନୁଷ୍ୟ ସ୍ନେହ ଦୁର୍ବଳ । ଆତ୍ମୀୟକୁ ସେ ପରମାତ୍ମୀୟ, ଦୂରକୁ ନିକଟ କରିବାକୁ ଚାହେଁ । ଅତୀତରେ ମୁଁ ତମକୁ ଯାହା କିଛି ଲେଖିଛି ସେ କେବଳ ସ୍ନେହର ଅନ୍ଧତାରେ । ମୋର ନିଜର ଲାଭ ଲୋକସାନର ଅଙ୍କ କଷି ମୁଁ କାହାରି ଉପକାରରେ କଦାପି ପ୍ରବୃତ୍ତ ହୁଏ ନାହିଁ, ମାତ୍ର

ନିଜକୁ ଢାଳିଦିଏ, ଲୋଟାଇ ଦିଏ, ସର୍ବସ୍ୱାନ୍ତ ହୁଏ । ସେହିପରି ତୁମକୁ ନିଜର କରିବାକୁ ଭାବିଥିଲି । X X ତୁମକୁ ଅତି ନିଜର ମନେ କରେ ନାଁ, ତେଣୁ ଏପରି ଭାବି ନେଇଥିଲି । କାରଣ ତୁମ ମଧ୍ୟରେ ମୁଁ ଅମୃତର ସନ୍ଧାନ ପାଇଛି । ତୁମେ ଯେ ମୋ ପୂର୍ବଜନ୍ମର ସନ୍ତାନ ।'' (ଜୀବନ ଚରିତ : ପୃ:୨୧୧) ହାୟରେ ମାତୃତ୍ୱର ଆକାଂକ୍ଷା !!! ଫକୀରମୋହନ ସୃଷ୍ଟି କରିଥିଲେ ବିଫଳ ମାତୃତ୍ୱର ସାର୍ଥକ ହାହାକାରର ମୂର୍ତ୍ତିମତୀ ବିଗ୍ରହ ସାରିଆକୁ ନିଜ କଳ୍ପନାରୁ । ସେଇ ପୁଣି ଅର୍ଦ୍ଧଶତକ ପରେ ଆଲୋଚକ ସୁରେନ୍ଦ୍ର ମହାନ୍ତିଙ୍କ ସମ୍ମୁଖରେ ରକ୍ତମାଂସଧାରିଣୀ ହୋଇ ଉଭା ହେଲା । ତା'ର ଅତୃପ୍ତ ମାତୃତ୍ୱର କ୍ଷୁଧା ଶାନ୍ତ କରିବା ନିମନ୍ତେ ଶ୍ରୀ ମହାନ୍ତି ତାରି କୋଳରେ ନିଜକୁ ଲୋଟାଇ ଦେଇ ନିଜର ବାତ୍ସଲ୍ୟର ଦାବି ମେଣ୍ଟାଇବାକୁ କାମନା କଲେ । ମାତ୍ର କୁନ୍ତଳା ଏ ଯୁଗର ନାରୀ, ନିର୍ମମ ବାସ୍ତବତା । ଯେ କୌଣସି ସ୍ନେହକାଙ୍ଗାଳ ସନ୍ତାନ ତାଙ୍କ କୋଳରେ ନିଜକୁ ଲୋଟାଇ ଦେଇ ନିଜର ଜୀବନକୁ ଧନ୍ୟ କରିବାକୁ ସୁଖକର ମଣିବ । ମାତ୍ର ଚିର ଅଭିଶପ୍ତା କୁନ୍ତଳା ଏହି ଦୁର୍ଲଭ ସୁଯୋଗ ଟିକକ ବା ପାଇଲେ କାହିଁ ? ତେଣୁ ତ ସେ ନିଜର ଅସହାୟ ମୁହୂର୍ତ୍ତର ଏକମାତ୍ର ଅବଲମ୍ବନ କଲମ ମାଧ୍ୟମରେ ପ୍ରକାଶ କରିଗଲେ-

''ଲାଂଛନା ଗଂଜନା ଶତ ଭର୍ତ୍ସନା ଜୀବନେ
ପଦେ ପଦେ ଅପମାନ ପୀଡ଼ଇ ମରମେ,
ତୀକ୍ଷ୍ଣ ଶେଳ ଶିଳା ଅବା କଠିନ କୁଳିଶ
ପ୍ରହାରେ ଜର୍ଜର ହିଆ, ଜୀବନ ମୋ ବିଷ ।''

ଏହି ବିଷଦଗ୍ଧ ପ୍ରାଣରୁ ଅମୃତ ସୃଷ୍ଟିର ଦୁର୍ଲ୍ଲଭ କାମନା ନେଇ ତାଙ୍କର ଉପେକ୍ଷିତ ଆତ୍ମା ଆର୍ତ୍ତ ଚିତ୍କାର କରୁଥିଲା-

''ପାଷାଣେ ପିହିତ ଭାଗ୍ୟ ବିଚାରିଛ ସଖା,
ପାଷାଣ ପ୍ରାଣରେ ତେଣୁ ନ ପଶଇ ଦକା ।
ଉଚ୍ଚାସନେ ସ୍ୱଚ୍ଛ ମନେ ଆରାମ ଶୟନେ,
ହରୁଛ ଦିବସ ନିଶି, କାନ୍ଦେ ମୁଁ ଅୟନେ ।
ମୋ ରକ୍ତ ତପତ ଧାରେ,
ମୋର କ୍ରୂର ହାହାକାରେ
ବୁଡ଼ି ରହିଅଛି ତବ ଜୀବନ ସମ୍ପଦ
ନ ମିଳେ ମୁକତି ମୋତେ ଧାୟି ତା ଶ୍ରୀପଦ ।
ତୁମେ ବୀର ତୁମେ ଗୁଣୀ,
ମୁଁ ହୀନ ଅଜ୍ଞାନ ପ୍ରାଣୀ
ତୁମରି ସଭ୍ୟତା ପାଶେ ତୁମରି ଆଲୋକେ
ତୁମ ବିନା ବାସ ମୋର ଅନନ୍ତ ନରକେ ।।

(ଅଭିଶପ୍ତର ଅଭିମାନ-ସ୍ଫୁଲିଙ୍ଗ)

କିଏବା ଏଇ ଅଶାନ୍ତ ଆତ୍ମାର ଅତୃପ୍ତ ଆର୍ତ୍ତନାଦର ମୂଲ୍ୟ ଦେଲା ? କୁନ୍ତଳା ହାତ ବଢ଼ାଇ ଥିଲେ ଶକୁନ୍ତଳାଙ୍କ ଭଳି, ପୁଣି ପାର୍ବତୀଙ୍କ ଭଳି, ମାତ୍ର ତାଙ୍କ ଭାଗ୍ୟକୁ କେହି ଦୁଷ୍ମନ୍ତ କିମ୍ବା ଶଙ୍କର ଜୁଟିଲେ ନାହିଁ ତାଙ୍କ ହାତ ଧରି ପାଖକୁ ଟାଣି ନେବାକୁ । କୈଳାସ ଜୀବନରେ ଦେଣା ପାଉଣାର ହିସାବ ନିକାଶ କରୁ କରୁ ସମୟ କଟାଇ ଦେଲେ, ଗୋଟିଏ ଦୁର୍ଲଭ ଜନ୍ମକୁ ବ୍ୟର୍ଥ କରିଦେଇ ।

ଏଥିରେ ସନ୍ଦେହ କରିବାର କିଛି ନାହିଁ ଯେ, ବ୍ରହ୍ମଚାରୀଙ୍କ ସହିତ କୁନ୍ତଳାଙ୍କର ଯୋଗାଯୋଗ, ବିଧାତାଙ୍କର ନିର୍ମମ ପରିହାସ । ମାତ୍ର ଏଥିପାଇଁ ମଧ୍ୟ କୈଳାସଙ୍କର ନିଷ୍ଠୁର ନୀରବତାକୁ ହିଁ ଅଙ୍ଗୁଳି ନିର୍ଦ୍ଦେଶ କରାଯାଇପାରେ । ଘାଟଶିଳାର ସେଇ ବିଦାୟର ନିର୍ମମ ମୁହୂର୍ତ୍ତରେ କୈଳାସ ଯଦି ଥରେ ମାତ୍ର କହି ଥାଆନ୍ତେ, "ଆସ କୁନ୍ତଳା, କୈଳାସ ଚିରଦିନ ତୁମର । ତାକୁ ଛାଡ଼ି ତମେ ଯିବ କୁଆଡ଼େ ?" ତେବେ କ'ଣ କୁନ୍ତଳା ତାକୁ ପ୍ରତ୍ୟାଖ୍ୟାନ କରିଦେଇ ଅନିଶ୍ଚିତ ଭବିଷ୍ୟତ ଆଡ଼କୁ ପାଦ ବଢ଼ାଇ ଥାଆନ୍ତେ ? ମନେରଖିବାକୁ ହେବ ଯେ, ବ୍ରହ୍ମଚାରୀଙ୍କ ସହିତ ତାଙ୍କର ପରିଚୟ ସେତବେଳକୁ ସୁଦ୍ଧା ସେତେ ନିବିଡ଼ ହୋଇ ନାହିଁ । କୁନ୍ତଳା ତାଙ୍କ ଉପରେ ପୂର୍ଣ୍ଣ ରୂପରେ ନିର୍ଭର କରିନାହାନ୍ତି । କୈଳାସଙ୍କ ମନରେ ଈର୍ଷ୍ୟା ସଂଚାର କରାଇବାକୁ ସେ ହୁଏତ ତାଙ୍କୁ ତାଙ୍କ ଜୀବନର ଅନ୍ୟ ଏକ ପୁରୁଷ ରୂପରେ ଠିଆ କରାଇବାକୁ ଚିନ୍ତା କରୁଛନ୍ତି ମାତ୍ର । ତେବେ ଏ କ୍ଷେତ୍ରରେ ସୁଦ୍ଧା କୈଳାସଙ୍କର ମୌନତା ତାଙ୍କୁ ଯେ କିଭଳି ବ୍ୟଥିତ କରିଥିବ; ତାହା ଅନୁଭବୀ ବ୍ୟତୀତ ଅନ୍ୟ କେହି ଜାଣିବା ସମ୍ଭବପର ନୁହେଁ । କୁନ୍ତଳା ଏଥର ଯାତ୍ରା ଆରମ୍ଭ କଲେ ଆଲୋକରୁ ଅନ୍ଧାର ମଧ୍ୟକୁ । ଥରେ ବାଟକୁ ଗୋଡ଼ ବଢ଼ାଇ ଦେବାପରେ, ଆଉ ପୁଣି ଲେଉଟି ପଛକୁ ଅନାଇବାର କୌଣସି ଉପାୟ ମଧ୍ୟ ନ ଥିଲା । (କଟକର ନିଜର ସମସ୍ତ ବ୍ୟବସ୍ଥାକୁ ସେ ଭାଙ୍ଗିଦେଇ ଯାଇଥିଲେ ।) ପୁଣି ଦୀର୍ଘକାଳ ଧରି ନିଜ ଜୀବନ ସହିତ ଯେଉଁ ଲୁଚକାଳି ସେ ଖେଳୁଥିଲେ, ଏଣିକି ଆଉ ସେଥିପାଇଁ ତାଙ୍କର ଧୈର୍ଯ୍ୟ ମଧ୍ୟ ନ ଥିଲା । ଯାହାହେଉ, ଏହାର ଶେଷ ଦେଖିବା ନିମନ୍ତେ ସେ ବ୍ୟସ୍ତ ହୋଇ ପଡ଼ିଥିଲେ । ତେଣୁ ଭବିଷ୍ୟତ ହେଉ ମଧ୍ୟ ଅନିଶ୍ଚିତ, ତାକୁ ଆପଣାର କରିନେବା ବ୍ୟତୀତ ତାଙ୍କର ଆଉ ଅନ୍ୟ ଉପାୟ ନ ଥିଲା । ଭାଗ୍ୟର ବିଡ଼ମ୍ବନା ଦେଖନ୍ତୁ, ଯେଉଁ ଦୁଇଜଣ ପୁରୁଷଙ୍କ ଉପରେ ସେ ଏ ପର୍ଯ୍ୟନ୍ତ ନିର୍ଭର କରି ଆସିଥିଲେ ଉଭୟେ ଏହି ବିଦାୟ ଲଗ୍ନରେ ଉପସ୍ଥିତ ଥାଇ ବ୍ରହ୍ମଚାରୀଙ୍କ ହାତକୁ ତାଙ୍କୁ ଟେକିଦେଲେ । କୁନ୍ତଳା ନିଜକୁ ଜାଳିଦେବା ନିମନ୍ତେ, ନିଜ ଉପରେ ଚରମ ପ୍ରତିଶୋଧ ନେବା ନିମନ୍ତେ ସବୁମତେ ପ୍ରସ୍ତୁତ ହୋଇ ଯାଇଥିଲେ । ବ୍ରହ୍ମଚାରୀ ସେଥିରେ ସାମାନ୍ୟ ସହାୟତା ମାତ୍ର କରିଛନ୍ତି । କୁନ୍ତଳା ହୁଏତ ଏତେବେଳକୁ ବୁଝିପାରିଥିଲେ, ଦେବତା ବୋଲି ଯାହାକୁ ସେ ଏ ପର୍ଯ୍ୟନ୍ତ ଶ୍ରଦ୍ଧା ଭକ୍ତି କରି ଆସୁଥିଲେ, ସେ ସାମାନ୍ୟ ବାଳିଗରଡ଼ାଟିଏ ମଧ୍ୟ ନୁହେଁ । ଯେଉଁ ପାତ୍ରରେ ନିଜ ହୃଦୟର ସମସ୍ତ ପ୍ରୀତିମଧୁକୁ ସେ ଢାଳି ଦେଉଥିଲେ, ସେଇଟି ଗୋଟିଏ ଫୁଟାପାତ୍ର ମାତ୍ର । ତେଣୁ କୁନ୍ତଳା ବାଧ୍ୟ ହୋଇ ଜୀବନର ନୂତନ ମୂଲ୍ୟବୋଧ ଅନ୍ୱେଷଣରେ ଅନିଶ୍ଚିତତାର ପଥରେ ପାଦ ବଢ଼ାଇଲେ, କିମ୍ବା ବାଧ୍ୟ ହେଲେ । କୈଳାସ, କୁନ୍ତଳାଙ୍କ ଜୀବନର ପ୍ରଥମ ପୁରୁଷ । ତାଙ୍କଠାରୁ କୁନ୍ତଳାଙ୍କର ପ୍ରୟୋଜନ ଚିରଦିନ ପାଇଁ ଶେଷ ହୋଇ ଯାଇ ସମ୍ପର୍କ କେବଳ ଔପଚାରିକତା ମଧ୍ୟରେ ବଜାୟ ରହିଲା ।

କୁନ୍ତଳାଙ୍କର ଜୀବନୀକାର ଚକ୍ରଧର ମହାପାତ୍ର, ତାଙ୍କର ଏହି ଆଚରଣକୁ ସାମାନ୍ୟ ଅଶ୍ରଦ୍ଧାର ଦୃଷ୍ଟିରେ ଦେଖିଛନ୍ତି ଏବଂ କୁନ୍ତଳାଙ୍କ ଏହିଭଳି ଆଚରଣକୁ ଘୃଣା କରୁଥିବାର ମଧ୍ୟ ଲୁଚାଇ ନାହାନ୍ତି । ହୁଏତ ସାଧାରଣ ଦୃଷ୍ଟିରୁ ଏଥିରେ ସତ୍ୟତା ଥାଇପାରେ ମାତ୍ର ଟିକିଏ ତଳେଇ କରି ବିଚାର କଲେ, କୁନ୍ତଳାଙ୍କର ଅନନ୍ୟୋପାୟତା ସ୍ପଷ୍ଟ ଦେଖାଯିବ । ପାପପୁଣ୍ୟ, ନ୍ୟାୟ-ଅନ୍ୟାୟ ସମ୍ପର୍କରେ କୁନ୍ତଳା ସେତେବେଳକୁ ପ୍ରାୟ ନିସ୍ପୃହ ହୋଇ ପଡ଼ିଥିଲେ । ସେ କେବଳ ତାହା ହିଁ କରୁଥିଲେ, ଯାହା ତାଙ୍କୁ କରିବାକୁ ପଡୁଥିଲା ।) ଆମେ ଅଧିକାଂଶ ତାହା ହିଁ ତ କରୁ । ଉଠାଇବାକୁ ପଡୁଛି । କୈଳାସ ଚକ୍ରଧରଙ୍କୁ ଲେଖିଲେ- ସାରା ଜୀବନ ଧରି କିଛି ପାଇବା ନିମନ୍ତେ ବ୍ୟାକୁଳ ଭାବରେ ପ୍ରତୀକ୍ଷା କରିବା ପରେ, ପୁଣି ନିଜର ସର୍ବସ୍ୱ ଦେଇ ସାରିବା ପରେ, ଅଞ୍ଜଳି ଯେତେବେଳେ ତାଙ୍କର ପ୍ରକୃତରେ ଶୂନ୍ୟ ରହିଗଲା, ସେତେବେଳେ ସେ କ'ଣ ଅବା କରିଥାଆନ୍ତେ ? ଆଉ ଅପେକ୍ଷା କରିବା ନିମନ୍ତେ ସମୟ ତ ବସି ନଥିଲା, ଦେଇ

ସାରିବା ପରେ , ଅଞ୍ଜଳି ଯେତେବେଳେ ତାଙ୍କର ପ୍ରକୃତରେ ଶୂନ୍ୟ ରହିଗଲା, ସେତେବେଳେ ସେ କ'ଣ ଅବା କରିପାରି ଥାଆନ୍ତେ ? ଆଉ ଅପେକ୍ଷା କରିବା ନିମନ୍ତେ ସମୟ ତ ବସି ରହି ନ ଥିଲା । ଚିରକ୍ଷୁଧିତ ବ୍ୟକ୍ତି ଯଦି ଖାଦ୍ୟ ଲାଳସାରେ ଇତସ୍ତତଃ ଧାଏଁ, ତେବେ କ'ଣ ଆମେ ସେଥିପାଇଁ ତାକୁ ନିନ୍ଦା କରିବା ?

ଦୀର୍ଘକାଳ ଧରି କୁନ୍ତଳା ହୃଦୟରେ ଗୋଟିଏ ମାତ୍ର ସ୍ୱପ୍ନକୁ ଲାଳନ କରି ଆସୁଥିଲେ ନାରୀମାନେ କେବଳ ପୂର୍ଣ୍ଣତା ନିମନ୍ତେ ତାଙ୍କର ଏହି ଏକମାତ୍ର କାମନାକୁ ଅଯୌକ୍ତିକ ବୋଲି କୁହାଯାଇପାରିବ ନାହିଁ । ତାଙ୍କର ଯୋଗ୍ୟତା ସମ୍ପର୍କରେ ମଧ୍ୟ ପ୍ରଶ୍ନ ଉଠାଇବା ନିଷ୍ଠୁରତା ହେବ । ତଥାପି ଯେତେବେଳେ ତାଙ୍କର ସେହି ଏକମାତ୍ର କାମନାପୂର୍ଣ୍ଣ ହେବାର ସକଳ ଉପାୟ ବ୍ୟର୍ଥ ହୋଇଗଲା, ସେତେବେଳେ ଚିନ୍ତାର ଭାରସାମ୍ୟ ବଜାୟ ରଖିବା ତାଙ୍କ ପକ୍ଷରେ ସମ୍ଭବପର ହେଲା ନାହିଁ । ଏହି ସମୟରେ କୈଳାସଚନ୍ଦ୍ରଙ୍କର ନିଷ୍କ୍ରିୟତା ନିଶ୍ଚୟ ତାଙ୍କୁ ଚରମ ଆଘାତ ଦେଇଥିବ । କୈଳାସ କୁନ୍ତଳାଙ୍କ ଜୀବନରୁ ନିଜକୁ ଦୂରେଇ ରଖିବା ନିମନ୍ତେ ମନେ ମନେ ସ୍ଥିର କରି ସାରିଥିଲେ ହେଁ, ପ୍ରକାଶ୍ୟରେ ଏହା କୁନ୍ତଳାଙ୍କୁ କହି ନ ଥିଲେ । ଚକ୍ରଧର ଏଭଳି ଜଟିଳ ପରିବେଶରେ କୁନ୍ତଳାଙ୍କ ପାଇଁ କିଛି କରିପାରିବାର ଅବସ୍ଥାରେ ନ ଥିଲେ । ଏଇ ଅବସ୍ଥାରେ କୁନ୍ତଳା ଯେତେବେଳେ କାଳ ସିନ୍ଧୁର ଅତଳାନ୍ତ ଗହ୍ୱର ମଧ୍ୟରେ ତଳେଇ ଯିବାକୁ ଆରମ୍ଭ କରିଥିଲେ, ହଠାତ୍ ବ୍ରହ୍ମଚାରୀଙ୍କର ସାହାଯ୍ୟକାରୀ ହସ୍ତ ତାଙ୍କ ଆଡ଼କୁ ପ୍ରସାରିତ ହୋଇ ଥିଲା ଏବଂ କୁନ୍ତଳା ଯଦି ତାଙ୍କୁ ଦେବଦୂତର ସମ୍ମାନ ଦେଇଥାଆନ୍ତି, ତେବେ ସେଥିପାଇଁ ତାଙ୍କୁ ଦୋଷ ଦେଇ ହେବ ନାହିଁ । ଏହି ମୁହୂର୍ତ୍ତ ହେଉଛି କୁନ୍ତଳାଙ୍କ ଜୀବନର ସବୁଠାରୁ ଅଧିକ ନମନୀୟ ଏବଂ ଉତ୍ତେଜନାପୂର୍ଣ୍ଣ ମୁହୂର୍ତ୍ତ । ଜୀବନରେ ଯେଉଁମାନଙ୍କ ଉପରେ ସେ ଏ ପର୍ଯ୍ୟନ୍ତ ନିର୍ଭର କରି ଆସିଥିଲେ, ସେମାନେ ଯଦି ଆଉ ଟିକିଏ ବିଚାରବନ୍ତ ହୋଇଥାଆନ୍ତେ, ତେବେ କୁନ୍ତଳାଙ୍କଜୀବନର ମାନଚିତ୍ର ନିଶ୍ଚୟ ବଦଳି ଯାଇଥାଆନ୍ତା । ତା'ପରେ କୁନ୍ତଳା ଯେଉଁ ଦଶବର୍ଷ ବଞ୍ଚି ରହିଲେ, ତାହାର ଇତିହାସ ମଧ୍ୟ ଅଭିନବ ହୋଇଥାଆନ୍ତା । । ଓଡ଼ିଶାର ସାମାଜିକ ଜୀବନ, ବିଶେଷ କରି ଓଡ଼ିଆ ସାହିତ୍ୟ ଯେ କିଭଳି ଗର୍ବିମନ୍ତ ହୋଇଥାଆନ୍ତା । ଓଡ଼ିଶାର ସାମାଜିକ ଜୀବନ, ବିଶେଷ କରି ଓଡ଼ିଆ ସାହିତ୍ୟ ଯେ କିଭଳି ଗର୍ବିମନ୍ତ ହୋଇଥାଆନ୍ତା, ତାହା ବର୍ତ୍ତମାନ କେବଳ ଅନୁମାନ କରାଯାଇପାରେ ।

କୁନ୍ତଳା ଦିଲ୍ଲୀ ଚାଲିଗଲା ପରେ ହୁଏତ କୈଳାସ ଅନୁତପ୍ତ ହୋଇଥିଲେ, ମାତ୍ର ସେ ଅନୁତାପରେ ଯଥାର୍ଥ ଆନ୍ତରିକତା କେତେ ଥିଲା, ଆଜି ଏତେଦିନ ପରେ ସେ ବିଷୟରେ ପ୍ରଶ୍ନ ଉଠାଇବାକୁ ପଡୁଛି କୈଳାସ ଚକ୍ରଧରଙ୍କୁ ଲେଖିଲେ- "ତୁମେ ସମସ୍ତେ ମୋତେ ଛାଡ଼ିଗଲ । କଣ କରିବି ? ଏବେ ଲଣ୍ଡା ବୃକ୍ଷ । ଯାହା ଯେତେ ଦୂର ସମ୍ଭବ ତାହା ହିଁ କରି ଯାଉଛି । ତୁମେମାନେ ତ ସ୍ୱାର୍ଥ-ସ୍ରୋତରେ ଭାସି ମୋତେ ଛାଡ଼ିଛ । ତାଙ୍କୁ କ'ଣ ଲେଖିବି ? ଆଉ ମୋର ପୂର୍ବରୁ ଅକୃତ୍ରିମ ସେହି ସମ୍ଭବର ନୁହେଁ । ସେଥିପାଇଁ ପୃଥକ୍ ଏବଂ ମୌନୀ ରହିବାକୁ ଚାହେଁ ।" (ଜୀବନ ଚରିତ : ପୃ: ୩୦୬-୩୦୮) । ଯେଉଁ ସ୍ୱାର୍ଥସ୍ରୋତାରେ ଭାସି ସମସ୍ତେ (ଅର୍ଥାତ୍ ମୁଖ୍ୟତଃ କୁନ୍ତଳା) ତାଙ୍କ ନିକଟରୁ ଦୂରେଇ ଗଲେ ବୋଲି ସେ ଅଭିଯୋଗ କରିଛନ୍ତି ସେ ନିଜେ ଚାହିଁଥିଲେ, ସେଇ ସ୍ରୋତର ଗତିକୁ ନିଜ ଇଚ୍ଛାରେ ପରିଚାଳିତ କରି ପାରିଥାଆନ୍ତେ । ଜୀବନ ଯେ ତା'ର ନିଜ ବାଟରେ ଚାଲେ ଏବଂ ଧରାବନ୍ଧା ଛକ ମଧ୍ୟରେ କ୍ୱଚିତ୍ ଧରା ଦିଏ ଏହି ମହାନ୍ ସତ୍ୟଟିକୁ କୈଳାସ କିଭଳି ଜାଣି ପାରିଲେ ନାହିଁ ତାହା ହିଁ ଆଶ୍ଚର୍ଯ୍ୟ । କୈଳାସ କୁନ୍ତଳାଙ୍କ ପାଇଁ ଯେଉଁ ଜୀବନର ଚିନ୍ତା କରୁଥିଲେ, ସେଥିରେ କୁନ୍ତଳାଙ୍କର ମନ ଭରିବାର ନୁହେଁ । କୁନ୍ତଳା କୈଳାସଙ୍କ ଜୀବନରେ ସ୍ଥାୟୀ ଅଧିକାରର ସମ୍ମାନରେ ପ୍ରତିଷ୍ଠିତା ହେବାକୁ ଚାହୁଁଥିଲେ । ଉଭୟଙ୍କର ସମ୍ପର୍କ ଆଉ ଗୋପନ ହୋଇ ରହି ନ ଥିଲା । କୈଳାସ-ଗୃହିଣୀ ତୁଳସୀ ଦେବୀ ଏ ବ୍ୟାପାରଟିକୁ ଅଗତ୍ୟା

ଗ୍ରହଣ କରି ନେଇଥିଲେ ଏବଂ କୈଳାସଙ୍କ କନ୍ୟା ଦୀର୍ଘଦିନ ଧରି କୁନ୍ତଳାଙ୍କ ନିକଟରେ ରହି ପାରିବାରିକ ସମ୍ପର୍କକୁ ଅନେକଟା ସ୍ୱାଭାବିକ କରି ଦେଇଥିଲା । ତଥାପି କୈଳାସ କୁନ୍ତଳାଙ୍କୁ ଯେତେବେଳେ ସାମାଜିକ ସମ୍ମାନ ଦେବା ନିମନ୍ତେ ପ୍ରସ୍ତୁତ ହୋଇ ପାରିଲେ ନାହିଁ, ସେତେବେଳେ ନିଶ୍ଚୟ ତାଙ୍କର ଉଦ୍ଦେଶ୍ୟ ସମ୍ପର୍କରେ ସନ୍ଦେହ ହେବା ସ୍ୱାଭାବିକ । ଜୀବନୀକାର ଏହି ମୁହୂର୍ତ୍ତରେ କୈଳାସଙ୍କର ନିଷ୍କ୍ରିୟତା ସମ୍ପର୍କରେ ଯାହା ଲେଖିଛନ୍ତି, ସେସବୁ ଗ୍ରହଣୀୟ ନୁହେଁ । ଯେଉଁ ମୁହୂର୍ତ୍ତଟି ସବୁଠାରୁ ଅଧିକ ଦୃଢ଼ତା ଆଶା କରୁଥିଲା, ସେହି ମୁହୂର୍ତ୍ତରେ ଦାର୍ଶନିକ ନିସ୍ପୃହତା ଅବଲମ୍ବନ କରି କୈଳାସ ନିଜ ପାଇଁ କ'ଣ ଭାବୁଥିଲେ, ଆଉ କ'ଣ ବା ତାଙ୍କର ହରାଇବାର ଭୟ ଥିଲା ? କିମ୍ବା ଯାହା ହରାଇବାର ଭୟରେ ସେ ନିଜ ଜୀବନର ସବୁଠାରୁ ମୂଲ୍ୟବାନ୍ ବସ୍ତୁଟିକୁ ହରାଇବାକୁ ପ୍ରସ୍ତୁତ ହୋଇଗଲେ, ତାହାର ପ୍ରକୃତ ମୂଲ୍ୟ ହୁଏତ ସେଇ ମୁହୂର୍ତ୍ତରେ ତାଙ୍କ ପାଖରେ କିଛି ନ ଥିଲା । କୁନ୍ତଳାଙ୍କ ସହିତ ତାଙ୍କର ସମ୍ପର୍କକୁ ସେ ସେଇ ମୁହୂର୍ତ୍ତରେ ଆଦୌ ଗୁରୁତ୍ୱ ଦେଉ ନ ଥିଲେ । ତାଙ୍କୁ ନିଜ ଜୀବନ କ୍ଷେତ୍ରରୁ ଦୂରେଇ ଦେଇ ନିଜେ ପରିଚ୍ଛନ୍ନ ଶୁଦ୍ଧ ହୋଇ ରହିଯିବାକୁ ଚିନ୍ତା କରୁଥିଲେ ? ଯଦି ତାହା ହିଁ ହୁଏ, ତେବେ ସେଥିପାଇଁ ପରବର୍ତ୍ତୀ କାଳରେ ତାଙ୍କର ଅନୁତାପକୁ କ'ଣ କୁହାଯିବ ?

ଯାହାହେଉ, କୁନ୍ତଳାଙ୍କର ଜୀବନ ଯେ ଏକ ପ୍ରବଞ୍ଚିତ ଏବଂ ଉପେକ୍ଷିତାର ଜୀବନ, ଏଥିରେ କୌଣସି ସନ୍ଦେହ ନାହିଁ । ତାଙ୍କର ଦିଲ୍ଲୀ ପ୍ରବାସ, ଏବଂ ସେଠାରେ ଜୀବନର ଅବଶିଷ୍ଟାଂଶ ଯାପନ, ଏହାକୁ ତାଙ୍କର ସମସ୍ତ ସ୍ୱପ୍ନସଉଧ ଉପରେ ନିର୍ମମ ପ୍ରତିଶୋଧ ବ୍ୟତୀତ ଅନ୍ୟ କିଛି କୁହାଯାଇପାରୁ ନାହିଁ । କୁନ୍ତଳା ସେଇଦିନ ହିଁ ଆତ୍ମହତ୍ୟା କରିଥିଲେ, ଯେଉଁଦିନ ଘାଟଶିଳାଠାରୁ ସେ ଦିଲ୍ଲୀଗାମୀ ଟ୍ରେନରେ ଉଠି ବସିଥିଲେ । ବଡ଼ କରୁଣ, ବଡ଼ ହୃଦୟ ବିଦାରକ ସେ ଆତ୍ମହତ୍ୟା । ତିଳ ତିଳ କରି ନିଜକୁ ନିଜ ହାତରେ ଶେଷ କରିଦେବା କେତେ ମର୍ମଦାହୀ, ତାହା ଭାଷାରେ ପ୍ରକାଶ କରିହେବ ନାହିଁ । ସେଠାରେ କୁନ୍ତଳା ଏକ ସର୍ବନାଶ ଖେଳରେ ପ୍ରମତ୍ତ ଥିଲେ । ସବୁ ହରାଇ ମଧ୍ୟ ସବୁ ପାଇଛିର ଛଳନାରେ ନିଜକୁ ପ୍ରତାରିତ କରି ଚାଲିଥିଲେ । ଏ ଜୀବନ ତାଙ୍କୁ ଭୋଗିବାକୁ ପଡ଼ିଥିଲା, ଦୀର୍ଘ ଦଶବର୍ଷ ଧରି । ଏହି ଦଶବର୍ଷ ମଧ୍ୟରେ ନିଜକୁ ଭୁଲାଇବାକୁ ସେଇ ଦୁଃଖିନୀ ରମଣୀଟିକୁ ଯେ, କ'ଣ କ'ଣ କରିବାକୁ ପଡ଼ିଥିବ, ତାହା କଳ୍ପନା କରି ନିଆଯାଇପାରେ । ଜୀବନ ଚରିତର ଲେଖକ ମଧ୍ୟ ସେ ସମ୍ପର୍କରେ ଲେଖିଛନ୍ତି, ''ଶୁଣାଯାଏ ବିବାହ ପରଠୁଁ ତାଙ୍କର ଜୀବନ କଦାପି ଦିନକ ପାଇଁ ସୁଦ୍ଧା ସୁଖୀ ନ ଥିଲା । ସେ କଳ୍ପନାବିଳାସୀ କବିଥିବାରୁ ଆଶାମୋଦରେ ବଂଚି ରହିଥିଲେ ମାତ୍ର । ବହୁ ଉଚ୍ଚ ଆଶାରେ ତାଙ୍କର ଅନ୍ତରାତ୍ମା ମୋହିତ ରହିଥିଲା''–(ଜୀବନ ଚରିତ ପୃ.୩୯୨)

ଉପସଂହାରରେ ତେଣୁ କୁହାଯାଇପାରେ ଯେ, କୁନ୍ତଳାଙ୍କ ଭିତରେ ଏ ଦେଶର ସନାତନ ଭାରତୀୟ ନାରୀ ସତ୍ତାଟିଏ ଅତ୍ୟନ୍ତ ସକ୍ରିୟ ରହି, ଜୀବନର ପ୍ରତି ପଦକ୍ଷେପରେ ତାଙ୍କୁ ନିୟନ୍ତ୍ରିତ କରୁଥିଲା । ସେ ସ୍ପଷ୍ଟ ସ୍ୱୀକାର କରୁଥିଲେ ''ହିନ୍ଦୁ ନାରୀର ସମସ୍ତ ଲଜ୍ଜା ନେଇ ଜୀବନ କଟାଇଲି, ଦିନେ ଏକା ହୋଇ ରାସ୍ତା ଉପରକୁ ଗଲି ନାହିଁ, ଦିନେ ଜୀବନର କୌଣସି ସୁଖ ସମ୍ଭୋଗ ପ୍ରତି କ୍ଷୀଣ କଟାକ୍ଷ ଦେଲି ନାହିଁ । ତଥାପି ମୋ ପ୍ରତି କର୍ତ୍ତାଙ୍କର ଏକି ଲାଞ୍ଛନା ?'' ତାଙ୍କର ପିପାସିତ ପ୍ରାଣ ଅପେକ୍ଷା କରୁଥିଲା, କୌଣସି ଯଥାର୍ଥ ଶୁଭାକାଂକ୍ଷୀର ଆନ୍ତରିକ ନିର୍ଦ୍ଦେଶକୁ, ଜଣେ ସୁଦକ୍ଷ ଆତ୍ମୀୟର ସୁପରିଚାଳନାକୁ । କୈଳାସ ଯେତେଦିନ ପର୍ଯ୍ୟନ୍ତ ଏ ଦାୟିତ୍ୱ ତୁଲାଉଥିଲେ, କୁନ୍ତଳା ନିଶ୍ଚନ୍ତରେ ତାଙ୍କରି ଇଙ୍ଗିତରେ ନିଜକୁ ନିୟନ୍ତ୍ରିତ କରୁଥିଲେ । କ୍ରମେ କୈଳାସଙ୍କର ମନୋଭାବ ବଦଳିବାକୁ ଆରମ୍ଭ କଲା ଏବଂ କୁନ୍ତଳା ମଧ୍ୟ ତାଙ୍କଠାରୁ ଅଧିକ ପାଇବାର କାମନାରେ ବ୍ୟସ୍ତ ବିବ୍ରତ ହୋଇ ଉଠିଲେ । ପରିଣାମରେ ଉଭୟଙ୍କ ମଧ୍ୟରେ ଏକ

ଫାଟ ଦେଖାଗଲା ଏବଂ ଏହା କ୍ରମଶଃ ବଢ଼ ହେବାକୁ ଆରମ୍ଭ କଲା । କେଉଁ ମୁହୂର୍ତ୍ତରେ ଯେ ଏହା ଯଥାର୍ଥରେ ଦୁର୍ଲଂଘ୍ୟ ହୋଇ ପଡ଼ିଲା, ଏହା କେହି ଜାଣିପାରିଲେ ନାହିଁ । କୁନ୍ତଳା ଏକଦା କାମନା କରିଥିଲେ-

ଆସ ମୋର ଦୀନ ହୃଦୟ ମନ୍ଦିରେ
ପ୍ରଣମିବି ପଦେ ଭକ୍ତି ନତ ଶିରେ,
ଲଗାଇ ଲଳାଟ ଚରଣ ଧୂଳିରେ,
ପବିତ୍ର ହେବି ମୁଁ ଅନ୍ତରେ ଶରୀରେ ।
ମୋହର ମୂରତି ତୁମ୍ଭ ଭିତରକୁ,
ଘେନି ନିରେଖିବି କେବଳ ତୁମ୍ଭକୁ ।
ମୋର ସତ୍ତା ଯିବ ହଜି ତୁମ୍ଭଠାରେ,
ଏଥୁ ବଳି ସୁଖ ଚାହେଁନା ସଂସାରେ ।" (ଅଞ୍ଜଳି)

ମନର ଦେବତାଙ୍କ ନିକଟରେ ଅଞ୍ଜଳି ମେଲାଇ କୁନ୍ତଳା ଚାହୁଁଥିଲେ, ସତ୍ତା ହଜାଇବାର ରୋମାଞ୍ଚକର ସୁଖ ଟିକିଏ । ମାତ୍ର ଅଞ୍ଜଳି ତାଙ୍କର ଶୂନ୍ୟ ରହିଗଲା । ଆଶା ତାଙ୍କର ଅପୂର୍ଣ୍ଣ ରହିଗଲା । ସୁଖତ କେହି କାହାକୁ ଦିଏ ନାହିଁ, ତାକୁ ଛଡ଼ାଇ ନେବାକୁ ହୁଏ, ବଳପ୍ରୟୋଗ କରି ଅଧିକାର କରି ନେବାକୁ ହୁଏ, ଉଚ୍ଛ୍ୱାସ ପ୍ରବଣ ଏକ କବିର ହୃଦୟ ନେଇ କୁନ୍ତଳା ତ ଏକଥା ବୁଝିଲେ ନାହିଁ । ହୁଏତ ସେହି କାରଣରୁ ମହାକାଳ ତାଙ୍କର ଅଞ୍ଜଳିକୁ ଶୂନ୍ୟ ରଖିଦେଲେ ।

(କୁନ୍ତଳା କୁମାରୀ ସାବତ ମହିଳା ମହାବିଦ୍ୟାଳୟର ରଜତ ଜୟନ୍ତୀ ଉପଲକ୍ଷେ ସ୍ମରଣିକା 'ଶ୍ରୀ'ରେ ୧୯୮୫-୮୬ରେ ମୁଦ୍ରିତ)

◀◀ ● ▶▶



ଡକ୍ଟର ହେମନ୍ତ କୁମାର ଦାସ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ପରିଚିତ ନାମ। ନାଟକ,ଗଳ୍ପ,ଉପନ୍ୟାସ,ଶିଶୁ ଓ ନବ ସାକ୍ଷର ସାହିତ୍ୟ ଏବଂ ସମାଲୋଚନା କ୍ଷେତ୍ରରେ ସେ ନିୟମିତ ଲେଖନୀ ଚାଳନା କରି ଆସୁଛନ୍ତି। ଏଥିପାଇଁ ସେ ବିପୁଳ ପାଠନୀୟ ଶ୍ରଦ୍ଧା ତଥା ସମ୍ମାନର ଅଧିକାରୀ ହୋଇପାରିଛନ୍ତି। ନିଜର ସାହିତ୍ୟିକ ଦର୍ଶନ ସମ୍ପର୍କରେ ସୂଚନା ଦେଇ ଡକ୍ଟର ଦାସ କହନ୍ତି, ମାଟି ଓ ମଣିଷର ଜୀବନ ସଂଗୀତ ଗାନ ହିଁ ହେଉଛି ପ୍ରତ୍ୟେକ ସାହିତ୍ୟିକର ଧର୍ମ। ମାଟିଠାରୁ ଦୂରେଇଗଲେ ମଣିଷ ଜୀବନଠାରୁ ମଧ୍ୟ ବିଚ୍ଛିନ୍ନ ହୋଇଜାଏ। ଜୀବନ ବ୍ୟତିରିକ୍ତ ସାହିତ୍ୟ ପଦବାଚ୍ୟ ହୋଇନପାରେ। ତାଙ୍କର ପ୍ରତ୍ୟେକ ଗଳ୍ପ,ଉପନ୍ୟାସ,ନାଟକ ଓ ଏକାଙ୍କିକାରେ ଏଇ ଜୀବନ ସଂଗୀତର କରୁଣ ମଧୁର ମୂର୍ଚ୍ଛନା ଶୁଣିବାକୁ ମିଳେ। 'ଗଙ୍ଗାଧର ଗ୍ରନ୍ଥାବଳୀ', 'ଭିକାରୀଚରଣ ଗ୍ରନ୍ଥାବଳୀ','ରାମଶଙ୍କର ଗ୍ରନ୍ଥାବଳୀ' ସମ୍ପାଦନା କରିବା ସହିତ 'କୁନ୍ତଳାକୁମାରୀ ଗ୍ରନ୍ଥମାଳା'ର ସମ୍ପାଦନା ହେଉଛି ଏ କ୍ଷେତ୍ରରେ ତାଙ୍କର ସଦ୍ୟତମ ଉଦ୍ୟମ। ସତୁରୀରୁ ଉର୍ଦ୍ଧ୍ୱ ପୁସ୍ତକର (ଉଭୟ ଇଂରାଜୀ ଓ ଓଡ଼ିଆରେ) ରଚୟିତା ଡଃ ଦାସ ବହୁ ମର୍ଯ୍ୟାଦାଜନକ ପୁରସ୍କାରେ ଭୂଷିତ ହୋଇ ସାରିଛନ୍ତି।

...ପ୍ରକାଶକ...

ମହମ୍ମଦିଆ ବଜାର,କଟକ-୭୫୩୦୦୨
ଫୋନ୍ ନଂ : ୯୪୩୭୩୦୭୮୬୭
Email : manoj-prakasan@hotmail.com

ମନୋଜ ପ୍ରକାଶନ
ISBN 978-81-907347-3-8
9 788190 734738